# ବାଲିଗରଡ଼ା ଓ ମାମୀ

ବିନୟକୃଷ୍ଣ ପଟ୍ଟନାୟକ



ଖୁସିରେ ପଢ଼ିବା ଅଭିଯାନ

# ବାଲିଗରଡ଼ା ଓ ମାମୀ

| | |
|---|---|
| ରଚନା | ବିନୟକୃଷ୍ଣ ପଟ୍ଟନାୟକ |
| ଅଙ୍କନ | ବ୍ରଜ କିଶୋର ଜେନା |
| ପ୍ରକାଶନ | **ଭାରତ ଜ୍ଞାନ ବିଜ୍ଞାନ ସମିତି,** ସି-୨, ହାଉସିଂ ବୋର୍ଡ଼ କଲୋନୀ, ବରମୁଣ୍ଡା, ଭୁବନେଶ୍ୱର-୭୫୧ ୦୦୩ ଫୋନ୍ (୦୬୭୪) ୪୭୦୮୯୧ |
| ଅଙ୍ଗସଜ୍ଜା ଓ ମୁଦ୍ରଣ | *ପଦ୍ମା କମର୍ସିଆଲ୍, ଭୁବନେଶ୍ୱର* |
| **ମୂଲ୍ୟ** | **ତିନି ଟଙ୍କା ମାତ୍ର** |
| ପ୍ରକାଶ କାଳ | ଜାନୁଆରୀ ପହିଲା ୧୯୯୭ |

---

ଏହି ବିଜ୍ଞାନପ୍ରେମୀ ପୁସ୍ତିକାଟି ଓଡ଼ିଶାରେ ଖୁସିରେ **ପଢ଼ିବା ଅଭିଯାନ** (Jan Vachan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଗାଁ ଗହଳରେ ଲୋକଙ୍କର ପଠନ ରୁଚିକୁ ତେଜିବା ଓ ଏକ ପାଠାଗାର ଆନ୍ଦୋଳନକୁ ସକ୍ରିୟ କରିବା ପାଇଁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।

---

• ***The Pebble and Mami*** • ***Author*** *: Binaya Krushna Pattanayak*
• ***Illustrator*** *: Braja Kishore Jena* • ***Publisher*** *: B.G.V.S, Orissa*
• ***Price : Rs.3.00*** • ***Publication Period:*** *1st Jan. 1997*



**ମା**ମୀ ବୋଲି ଝିଅଟିଏ । ତା' ମନରେ ଅନେକ କଥା ଖେଳେ । ଆକାଶରେ ମେଘ ଭାସିଗଲା ବେଳେ ସେ ଖୁସିରେ ତାକୁ ଅନେଇ ରହେ । ମେଘକୁ ଡାକେ ତା ସାଙ୍ଗରେ କଥା ହେବା ପାଇଁ, ଖେଳିବା ପାଇଁ । ଚଢ଼େଇକୁ ଦେଖି ସେ ହାତ ହଲାଏ । ଡାକି ଡାକି ତା' ଆଡ଼କୁ ଧାଇଁଯାଏ । ତା'ର ବି ଉଡ଼ିଯିବାକୁ ମନ ହୁଏ । ବଡ଼ ଗଛ ସବୁ ପବନରେ ହଲିବା ଦେଖିଲେ ସେ ବି ଉଲୁସି ଉଠେ । ଗଛ ସାଙ୍ଗରେ କଥା ହୋଇ ହୋଇ ସେ ବି ଗଛ ପରି ଝୁଲେ । ପୋଖରୀ କୂଳରେ ବସି ପୋକ, ଜୋକ, ମାଛ ଆଦିଙ୍କୁ ଡିମା ଡିମା ଆଖିରେ ଅନାଇ ରହେ । ପାଣି ଭିତରେ ହାତ ହଲାଏ;

ପାଣିରେ ପତ୍ର ଭସାଏ; ମାଛ ସହ କେତେ କ'ଣ ଗପିଯାଏ । କୋଇଲି ଗୀତ ଗାଇଲା ବେଳେ ସେ ବି ତା' ସାଙ୍ଗରେ "କୁହୁ" ମିଳାଏ । କିଛି ସମୟ ପରେ କୋଇଲିଟା ଚୁପ୍ ହୋଇଯାଏ । ସେ ସବୁବେଳେ ସମସ୍ତଙ୍କୁ କେତେ କ'ଣ କହି ଚାଲିଥାଏ । ସମସ୍ତଙ୍କୁ ତା'ର ନାହିଁ ନ ଥିବା ପ୍ରଶ୍ନ :

● ଏ ମାଛ, ତୁ କେମିତି ପହଁରୁଛୁ ? ମୁଁ ପହଁରିପାରିବି ? ତତେ କିଏ ପହଁରା ଶିଖାଇଲା ? ବିଲେଇ ତ ପହଁରି ପାରୁ ନାହିଁ ?

● ଏ କୋଇଲି, ତୁ କେମିତି ଗୀତ ଗାଉଛୁ ? ଗଧ ତ ତୋ ପରି ଗାଇ ପାରୁ ନାହିଁ ? ତୋ ଗୀତରେ ତୁ କ'ଣ କହୁଛୁ ?

● ମେଘରେ... ଏ ମେଘ... ମୋ କଥା ଶୁଣି ପାରୁଛୁ ? ତୋତେ ଆକାଶରେ କିଏ ଏମିତି ଭସାଉଛି ? ତୁ କୁଆଡ଼େ ଯାଉଛୁ ? କେଉଁଠୁ ଆସିଲୁ ? ମୋ ପାଖକୁ ଆସିବୁ ? ମୁଁ ବି ତୋ ସାଙ୍ଗରେ ଭାସିବି । କେତେ କଥା କହିବି ।

● ଚଢ଼େଇ ନାନୀ... ଟିକେ ଶୁଣେ । ତୋ ଡେଣା କେମିତି ଗଢ଼ା ହେଇଛି ? ମୋତେ ଟିକେ ଉଡ଼ା ଶିଖାଇ ଦେ' ନା ? ମୁଁ ତୋ ସାଙ୍ଗରେ କାହିଁ କୁଆଡ଼େ ଉଡ଼ିଯାନ୍ତି । ଆକାଶରେ ଥାଇ ମୁଁ ଦୁନିଆଁଯାକର ସବୁ ଜିନିଷକୁ ଦେଖି ପାରନ୍ତି । ମୋ ପୁଷି ବିଲେଇକୁ ବି ସାଙ୍ଗରେ ନେବୁ ତ ? କିନ୍ତୁ ସେ କ'ଣ ଉଡ଼ିପାରିବ ?

ସେ ଏପରି ଲଗାତର ଭାବିଚାଲିଥାଏ । ଗପି ଚାଲିଥାଏ ମଧ୍ୟ । କାହାରିକୁ ଛାଡ଼େ ନାହିଁ । କିନ୍ତୁ ସବୁଥର ତା ମୁହଁ ଶୁଖିଯାଏ । କେହି ତା'ର ପ୍ରଶ୍ନର ଜବାବ ଦିଅନ୍ତି ନାହିଁ । ସମସ୍ତେ ହସି ଦେଇ ଦୂରେଇ ଯାଆନ୍ତି । ଏପରିକି ତା' ପାଖ ଲୋକ ମଧ୍ୟ ନୀରବ । ମା' ବାପା କେହି ତା' ପ୍ରଶ୍ନର ଜବାବ ଦେଇ ପାରନ୍ତି ନାହିଁ । ବରଂ କେହି କେହି କହିଦିଅନ୍ତି, "ତୁ ବଡ଼ ହେଲେ ଆପେ ଆପେ ସବୁ ବୁଝିଯିବୁ" । ମାମୀ ବୋକା ବୋକା ହୋଇ ତାଙ୍କ ମୁହଁକୁ ଚାହେଁ । ତା' ହେଲେ ତୁମେ କ'ଣ ଏ ଯାଏଁ ବଡ଼ ହୋଇ ନାହଁ ? ତୁମେମାନେ କାହିଁକି ବୁଝିପାରି ନାହଁ ?" ସେ ମନେ ମନେ ଭାବେ ଓ ଚୁପ୍ ରହେ ।

ଦିନେ ସେ ବଗିଚାରେ ବସି ଫୁଲ ଗଛଗୁଡ଼ିକୁ ଅନାଇ ଥାଏ । ରଙ୍ଗୀନ ଫୁଲଗୁଡ଼ିକ ହସି ହସି ପବନରେ ଝୁଲୁଥା'ନ୍ତି । ରଙ୍ଗ ବେରଙ୍ଗ ପ୍ରଜାପତି, ମହୁମାଛି ଓ କୁନି ଚଢ଼େଇ ସବୁ ଉଡ଼ି ଉଡ଼ି ଜାଗାଟିକୁ ଆହୁରି ସୁନ୍ଦର କରିଥାନ୍ତି । ଏହି ମନୋହର ଦୃଶ୍ୟକୁ ମାମୀ ଭୋକିଲା ଆଖିରେ ଅନାଇ ରହିଥାଏ । ତା ମନରେ କେତେ ପ୍ରଶ୍ନ ଗଜେଇ ଉଠୁଥାଏ । କିନ୍ତୁ ତା ପ୍ରଶ୍ନକୁ କିଏ ବୁଝାଇବ ? ଯିଏ ଯାହା କାମରେ ମଜିଯାଇଥାନ୍ତି । ଫୁଲ, ପ୍ରଜାପତି, ମହୁମାଛି, ଆଦିଙ୍କୁ ମାମୀ କେତେ ପ୍ରଶ୍ନ ପଚାରି ପଚାରି ଥକିଗଲା । ତା' ଆଖିକୁ ନିଦ ଘାରିଲା। ସେ କିଛି ସମୟ ପାଇଁ ସପନ ରାଇଜରେ ବୁଡ଼ିଗଲା ।

ଦେଖିଲା ଛବିଗୁଡ଼ାକ ଗୋଟି ଗୋଟି ହୋଇ ତା ଆଖି ଆଗରେ ନାଚି ଗଲେ । କାହାଠାରୁ ଉତ୍ତର ନ ପାଇ ସେ ହତାଶ ହୋଇଗଲା । ତା ଆଖିରେ ଲୁହ ଛଳ ଛଳ ହୋଇ ଯାଇଥାଏ । ସେ କ'ଣ କଲେ ଏସବୁ ପ୍ରଶ୍ନର ଉତ୍ତର ପାଇପାରିବ ଭାବୁଥାଏ । ତା'ର କ'ଣ କେହି ଜଣେ ଭଲ ସାଙ୍ଗ ନାହାନ୍ତି ? ସେ ତ ଗଛ, ଲତା, ଫୁଲ, ପବନ, ମେଘ, ମାଛ, ଚଢ଼େଇ ସମସ୍ତଙ୍କୁ ଅତି ଭଲ ପାଉଛି । କିନ୍ତୁ କେହି ବି କାହିଁକି ତା କଥାକୁ ଶୁଣୁନାହାନ୍ତି ?

ଏତିକିବେଳେ ସେ ଶୁଣି ପାରିଲା, "ମାମୀ.... ଏ ମାମୀ.... ମୋ ସାଙ୍ଗରେ ସାଙ୍ଗ ହେବୁ ?" ମାମୀ ଚମକି ପଡ଼ିଲା । କି ଆଶ୍ଚର୍ଯ୍ୟ କଥା ! ସେ ନିଜକୁ ବି ବିଶ୍ୱାସ କରି ପାରିଲା ନାହିଁ । ସାଙ୍ଗଟିଏ ପାଇବାର ସବୁ ଆଶା ସେ ହରାଇ ସାରିଥିଲା । ସେ ସାଙ୍ଗେ ସାଙ୍ଗେ କହି ପକାଇଲା, "ହଁ... ହଁ... ମୁଁ ସାଙ୍ଗ ହେବି ।" ଲୁହ ଛଳ ଛଳ ଆଖିରେ ସେ ଦେଖି ପାରୁନଥାଏ, କିଏ ଏପରି କହୁଛି । ସ୍ୱରଟି ପୂରା ପାଖରୁ ଶୁଣା ଯାଉଥାଏ । ଲୁହ ପୋଛି ଦେଇ ସେ ଶବଦ ଆସୁଥିବା ଦିଗକୁ ଦେଖିଲା । କାହିଁ.... କେହି ତ ନାହିଁ ! ସେ ଆହୁରି ଭଲ କରି କାନେଇଲା । ଆଉ ଥରେ ଶୁଭିଲା, "ମାମୀ... ମାମିନୀ... ମୋ ସାଙ୍ଗରେ ସାଙ୍ଗ ହେବୁ ? ସ୍ୱରଟି ମାମୀର ଗୋଡ଼ ପାଖରୁ ଶୁଭୁଥାଏ । ମାମୀ ନଇଁପଡ଼ି ନିରେଖି ଚାହିଁଲା ।

ଘାସ ମୂଳରେ କିଏ ଜଣେ ହାତ ହଲାଇ ଖିଲି ଖିଲି ହୋଇ ହସୁଥାଏ । ମାମୀ ଚିହ୍ନିଲା; ସେ ଆଉ କେହି ନୁହେଁ । ତା'ର ନିତିଦେଖା



ବାଲିଗରଡ଼ାଟିଏ । ବାଲିଗରଡ଼ା କହିଲା, ''ମାମିନୀ... ମୁଁ ସବୁଦିନ ଦେଖୁଛି, ତୁ ଏମିତି କେତେ କ'ଣ ପଚାରି ଚାଲିଛୁ । କିନ୍ତୁ ସାଙ୍ଗ ପାଉ ନାହୁଁ କି ଉତ୍ତର ବି ପାଉ ନାହୁଁ । ମୁଁ ତତେ ସବୁ ଦିନ କେତେ ପାଟି କରି ଡାକୁଛି; କିନ୍ତୁ ମୋ ଡାକ ତୁ ଶୁଣି ପାରୁ ନାହୁଁ । ଆଜି ଖୁସିର କଥା । ତୁ ଆଜି ମୋ ପାଖରେ ବସିଲୁ । ମୁଁ ବି ତୋତେ ମୋ କଥା କହି ପାରିଲି ।''

ମାମୀ ଖୁସିରେ ପଚାରିଲା, ''ତୁ ମୋ ସାଙ୍ଗ ହେବୁ ? ମୁଁ ଆଜି ସବୁଠୁ ଖୁସି । ଚାଲ୍ ଗପିବା । ଆଚ୍ଛା କହିଲୁ... ତୁ ମୋ ପ୍ରଶ୍ନର ଉତ୍ତର ଦେଇପାରିବୁ ?'' ବାଲିଗରଡ଼ା କହିଲା, '' କି ପ୍ରଶ୍ନ ପଚାରିବୁ... ପଚାର ।''

ମାମୀ କହିଲା, "ମୁଁ ତତେ ମେଘ, ମାଛ, ଚଢ଼େଇ କି ଗଛ ବିଷୟରେ ପଚାରି ପାରିବି ?" ବାଲିଗରଡ଼ା ଜବାବ ଦେଲା- "କାହିଁକି ନୁହେଁ ? ଖୋଜି ଚାଲିଲେ ଆମେ ଗୋଟି ଗୋଟି କରି ସବୁ ପ୍ରଶ୍ନର ଉତ୍ତର ପାଇ ପାରିବା ।" ମାମୀ ବିଶ୍ୱାସ କରି ପାରୁ ନଥାଏ ଯେ ବାଲିଗରଡ଼ାଟିଏ କିପରି ମେଘ ଚଢ଼େଇ, ମାଛ ବିଷୟରେ କହିପାରିବ ? ସେ ତ କେବେ ବି ଏମାନଙ୍କୁ ଦେଖି ନଥିବ । ବାଲିଗରଡ଼ା ହସିଲା । କହିଲା, "ମାମିନୀ... ତୁ ତ କୁନି ଝିଅଟିଏ । କିନ୍ତୁ ମୋ ବୟସ ତୋ'ଠୁ ଯଥେଷ୍ଟ ବେଶୀ । ତୁ ମୋ କାହାଣୀ ଶୁଣିବାକୁ ଚାହୁଁଛୁ ? ତା' ଜାଣିଲେ ତୋର ସବୁ ସନ୍ଦେହ ଦୂର ହୋଇଯିବ । ଚାଲ ଆମେ ତୋର ସବୁ ପ୍ରଶ୍ନର ଉତ୍ତରକୁ ଖୋଜି ବାହାର କରିବା ।"

ମାମୀ ଖୁସି ହୋଇଗଲା । ବାଲିଗରଡ଼ା ସାଙ୍ଗରେ ଗପିବାକୁ ତିଆର ହୋଇଗଲା । ବାଲିଗରଡ଼ାକୁ ପାପୁଲିକୁ ଉଠାଇ ଆଣି ସେ ହସିଲା । ବାଲିଗରଡ଼ା ବି ଖିଲି ଖିଲି ହୋଇ ହସିଲା । ସେମାନଙ୍କ ହସାହସି ଦେଖି ଗଛ, ଲତା, ମେଘ, ପାହାଡ଼, ସୂର୍ଯ୍ୟ, ପୋଖରୀ, ଘର, ଆଦି ସମସ୍ତେ ହସୁଥାନ୍ତି । ଏହି ହସ ଖୁସିର ପରିବେଶ ଭିତରେ ଚକ୍‌ଚକ୍ କରୁଥିବା କୁନି ବାଲିଗରଡ଼ାଟି କୁଆଡ଼େ ଉଡ଼ିଗଲା । ଆକାଶକୁ ଉଠି ଯାଇ ସେ ଉଡ଼ିବାରେ ଲାଗିଲା । ସେ ମାମୀକୁ ଡାକୁଥାଏ, "ମାମିନୀ, ଚାଲ.... ଆମେ ଖୋଜିଯିବା ଏ ଦୁନିଆଁର ପ୍ରତିଟି କାହାଣୀକୁ ।"

ମାମୀ ତ ପୂରା ଭରସି ଯାଇଥାଏ ପ୍ରିୟ ସାଙ୍ଗର ସିନିହରେ । ସେ ବି ଉଡ଼ି ଚାଲିଲା ବାଲିଗରଡ଼ା ସାଙ୍ଗରେ । ତା' ମନର ଆଶା ଆଜି ତେଜି ହୋଇ ଯାଇଥାଏ । ଚଢ଼େଇ ପରି ଉଡ଼ୁ ସେ ଆକାଶରୁ ତଳକୁ ଦେଖୁଥାଏ । ରଙ୍ଗୀନ ଧରଣୀ, ଶାଗୁଆ ଗଛଲତା, ଜୀବନ୍ତ ଦୁନିଆଁର ଚଞ୍ଚଳତା, ପାଣି, ପବନର ବିବିଧ ଲୀଳାଖେଳା-ତାକୁ ଅତି ବିଚିତ୍ର ଲାଗୁଥାଏ । ସେ ମନ ଭରି ଏହି ସୁନ୍ଦରତାକୁ ପିଇ ଯାଉଥାଏ । ଉଡ଼ୁ ଉଡ଼ୁ ବାଲିଗରଡ଼ା କହି ଚାଲିଥାଏ ତା'ର ଜୀବନ କାହାଣୀ...

"...ମାମିନୀ, ଆଜି ସିନା ତୁ ମତେ ବାଲିଗରଡ଼ା ରୂପରେ ଦେଖୁଛୁ । କିନ୍ତୁ ଏହା ଆଗରୁ ମୋ ଜୀବନରେ ଅନେକ ଘଟଣା ଘଟିଛି । ଦିନେ ମତେ

ପବନ ଭାଇ ତା' କୋଳରେ ବସାଇ ଉଡ଼ାଇ ଆଣିଥିଲା ତୁମର ରଙ୍ଗୀନ ବଗିଚାକୁ । କିନ୍ତୁ କେଉଁଠୁ ଜାଣିଛୁ ? ତଳକୁ ଚାହାଁ । ଏଇ ନଈ କୂଳରୁ । ଏଇ ନଈ ହିଁ ମତେ ବାଲିଗରଡ଼ା ରୂପଟି ଦେଇଥିଲା ।''

ମାମୀ ତଳକୁ ଅନେଇଲା । କି ସୁନ୍ଦର ନଈଟିଏ । ଗୀତ ଗାଇ ଗାଇ ଆଗକୁ ବହି ଯାଉଥାଏ । ତାର ସ୍ୱଚ୍ଛ ଜଳରେ କେତେ ମାଛ, ସାପ, ପୋକ ଖେଳୁଥାନ୍ତି । ଆକାଶର ସୂରୁଜ, ମେଘ, ଚଢ଼େଇ ବି ଏଥିରେ ତାଙ୍କ ଛବି ଦେଖୁଥାନ୍ତି । ମାମା ବି ନିଜକୁ ଦେଖୁଥାଏ ସେ କିପରି ଆକାଶରେ ଭାସୁଛି । ବାଲିଗରଡ଼ା କହିଲା,

''ମୁଁ ବି ଦିନେ ଏମାନଙ୍କ ସହିତ ହସି ଖେଳି ଧାଉଁଥିଲି । ନଈ ପଠାରେ ଆମେ ତଳ ଉପର ଏଣେ ତେଣେ ହୋଇ କେତେ ମଉଜ କରୁଥିଲୁ । ଦିନେ ପବନ ଭାଇ ଖୁସିରେ ଧାଇଁ ଆସି ମତେ ଡାକିଲା । ତା' ଠେଲାରେ ମୁଁ କାହିଁ କେତେ ଦୂର ଉଡ଼ିଗଲି ଜାଣେନା । କିନ୍ତୁ ଶେଷରେ ଜାଣିଲି ଯେ, ମୁଁ ଏକ ରଙ୍ଗୀନ ଦୁନିଆଁ (ତୁମ ବଗିଚା)ରେ ପହଞ୍ଚିଛି ।'' ମାମୀ ଆହୁରି ଡିମା ଡିମା ଆଖି ଖୋଲି ଚାହିଁଥାଏ । ନୀରବ ମୁହଁଟିରେ ତା'ର ସୁନ୍ଦର ଆଖିପତା ଦୁଇଟି କେବଳ ଉଠାପକା ଚଳାଇଥାନ୍ତି । ସେ ନୀରବ ଭାବରେ ପଚାରି ଦେଲା, ''ଏହା ଆଗରୁ ?''

''ଆଗରୁ ମୁଁ ନଈ ପାଣି ଭିତରେ ଥିଲି । ପାଣି ସହିତ ମୁଁ ଆଗକୁ ଆଗକୁ ଧାଉଁଥିଲି ।'' ଏପରି କହି ସେ ପାଣି ଭିତରକୁ ଖପ୍ କିନା ଡେଇଁ ପଡ଼ିଲା । ମାମୀ କି ଆଉ ଚୁପ୍ ବସେ ? ସେ ତ ଆଜି ଦୁନିଆଁ ସାରା ଖୋଜି ବୁଲିବାକୁ ସାଙ୍ଗଟିଏ ପାଇଛି । ସେ ବି ବାଲିଗରଡ଼ା ସହ ନଈ ପାଣିକୁ ଡେଇଁ ପଡ଼ିଲା । କିନ୍ତୁ ତା'ର କିଛି ବି ଅସୁବିଧା ହେଲା ନାହିଁ । ସେ ଆରାମରେ ପାଣି ଭିତରେ ଚାଲବୁଲ, ଡିଆଁ, ଦଉଡ଼ ସବୁ କରି ପାରିଲା । ତାକୁ ମାଛଟିଏ ପରି ଖୁସି ଲାଗୁଥାଏ । ବାଲିଗରଡ଼ା ନଈ ସୁଅର ବିପରୀତ ଦିଗକୁ ଗଡ଼ି ଚାଲିଲା । ମାମୀ ବି ଧାଇଁଲା । ସେ ନଈ ଭିତରର ଛବି କେବେ ଦେଖି ନ ଥିଲା । ପାଣି ସୁଅରେ ମାଛ, ପୋକ, ଜୋକଙ୍କ ସହିତ

କେତେ ରକମର ଜିନିଷ ଭାସି ଆସୁଥାଏ । ଗୋଲିଆ ପଥର ସବୁ ଚକ ଭଳି ଗଡ଼ି ଗଡ଼ି ଆଗକୁ ଧାଉଁ ଥାନ୍ତି । ମନେ ହେଉଥାଏ ଯେପରି ପାଣି ସହ ପଥର, ବାଲି, କାଠି, କୁଟା, ମାଛ, ପୋକ ଆଦି ସମସ୍ତଙ୍କର ଏକ ତୀବ୍ର ପ୍ରତିଯୋଗିତା ଚାଲିଛି । କିନ୍ତୁ ସମସ୍ତେ ହସୁଥାନ୍ତି । ରାଗ, ରୁଷା ବୋଲି କିଛି ବି ନ ଥାଏ । ଏକ ତାଳରେ ଗୀତ ଗାଇ ଗାଇ ସେମାନେ ଏକ ନାଟକୀୟ ପରିବେଶ ତିଆରି କରିଥାନ୍ତି । ବିଚିତ୍ର ସେହି ଛବି !

ବାଲିଗରଡ଼ା କ'ଣ କହୁଛି ଶୁଣି ମାମୀ ତାକୁ ଅନେଇଲା । ଗଡ଼ି ଗଡ଼ି ପଛୁଆ ଧାଉଁ ଧାଉଁ ବାଲିଗରଡ଼ା କହିଲା, ''ମାମିନୀ.. ଦେଖେ କେତେ ବିବିଧ ଆକାରର ଗୋଡ଼ି, ପଥର ଆଦି ଗଡ଼ି ଚାଲିଛନ୍ତି । ମୁଁ ବି କେତେ ଦିନ ଯାଏଁ ଏମିତି ଧାଇଁ ଚାଲିଥିଲି । ମୋର ଆକାର ଆଗରୁ ଏମିତି ଛୋଟ ନଥିଲା । ମୁଁ ବେଶ୍ ବଡ଼ ଆକାରର ପଥରଟିଏ ଥିଲି ।'' ଏତିକିବେଳକୁ ସେମାନେ ନଈର ଆରମ୍ଭ ଜାଗାରେ ପହଞ୍ଚି ଯାଇଥିଲେ । ସେଠାରେ ନଈ ବେଶ୍ ସରୁଆ ଝରଣାଟିଏ ପରି ଦିଶୁଥାଏ । ବିରାଟକାୟ ଏକ ପାହାଡ଼ର କେଉଁ ଅନ୍ଧି ସନ୍ଧିରୁ ପାଣି ଧାରଟି ବାହାରିଥାଏ । ନୀରବ ପାହାଡ଼ଟାରେ ଜଙ୍ଗଲଟି ବେଶ୍ ଘଞ୍ଚ ଜଣା ପଡୁଥାଏ । କେବଳ ଝରଣାଟିର କୁଳୁକୁଳୁ ଶବଦ ସାଙ୍ଗକୁ ବିବିଧ ଜଙ୍ଗଲୀ ଚଢ଼େଇଙ୍କର ମଧୁର ଗୁଞ୍ଜନ ହିଁ ଶୁଣାଯାଉଥାଏ ।

ବାଲିଗରଡ଼ା ସହିତ ମାମୀ ପାଣି ବାହାରକୁ ଚାଲି ଆସିଲା । କି ସୁନ୍ଦର ଜାଗାଟିଏ ! ସକାଳର ସୂରୁଜ କିରଣ ବେଶ ନରମ ଲାଗୁଥାଏ । ମାମୀର ବଗିଚା ପରି ଏହା ଅତୀବ ଜୀବନ୍ତ ଓ ରଙ୍ଗମୟ ମନେ ହେଉଥାଏ । ବାଲିଗରଡ଼ା ମାମିନୀକୁ 'ଶୁଭସକାଳ' ମନାସିଲା । ଖୁସି ମନରେ ଦୁହେଁ ପାହାଡ଼ ଚଢ଼ିବାରେ ଲାଗିଲେ । କିଛି ଦୂର ଚଢ଼ିବା ପରେ ବାଲିଗରଡ଼ା ଅଟକିଗଲା । ଗୋଟିଏ ଜାଗାରେ ଏକ ବିଶାଳକାୟ ଲଣ୍ଡା ପଥର ଶୋଇଥାଏ । କଳାରଙ୍ଗର ଏହି ବିଶାଳ ଚକଡ଼ାଟାରେ କୌଣସି ବଡ଼ ଗଛ ନଥାଏ । ତା' ଉପରେ ଠାଆକୁ ଠାଆ ଶିଉଳି ମାଡ଼ିଥାଏ । କିଛି ଘାସବୁଦା ବି ଥାଏ । ବାଲିଗରଡ଼ା ଓ ମାମୀ ପଥର ଉପରକୁ ଉଠିଗଲେ । କିଛି ସମୟ ବସି ଥକା ମାରିଲେ । ମାମୀ କିଛି ସୁଆଦିଆ ଫଳରେ ପେଟ ଭରିନେଲା ।



ଏଥର ବାଲିଗରଡ଼ା ଯାହା କହିଲା, ମାମୀ ସେଥିରେ ଚମକି ପଡ଼ିଲା । ସେ କହିଲା, ''ଆଗ ମୁଁ ଏଠାରେ ଥିଲି'' । ପଥରର ଗୋଟିଏ କୋଣକୁ ସେ ଦେଖାଇଲା । ପଥରର ସେ ଧାରଟି ଚକାଳିଆ ଜଣା ପଡୁ ନଥିଲା । ମନେ ହେଉଥିଲା ଯେମିତି ସେ ଧାରଟିରୁ କିଏ ଖଣ୍ଡେ ପଥର ବାହାର କରି ନେଇଛି । ମାମୀ ବାଲିଗରଡ଼ାର ମୁହଁକୁ ଚାହିଁଲା ।

ବାଲିଗରଡ଼ା କହିଲା, ''ହଁରେ ମାମିନୀ । ଦିନେ ମୁଁ ଏହି ମୂଳ ପଥରର ଏକ ଅଂଶ ଥିଲି । ସେତେବେଳେ ମୁଁ ଏବେପରିକା କୁନି ବାଲି ଗରଡ଼ା ନଥିଲି । ମୁଁ ଥିଲି ଏକ ବିଶାଳକାୟ କଳା ରଙ୍ଗର ପଥର । ଏହି ପଥରଠୁ ଆହୁରି ଅନେକ ବଡ଼ । ଏହି ବିଶାଳ ଜଙ୍ଗଲ ଇଲାକାରେ ମୋର

ଏମିତି କେତେ ଜାତି ଭାଇ ଥିଲେ । ପ୍ରତିଦିନ କେତେ ଚଢ଼େଇ, ମାଙ୍କଡ଼, ବାଘ, ଭାଲୁ ଆସି ଆମ ଉପରେ ଶୋଉଥିଲେ, ଉଠାବସା କରୁଥିଲେ, ଗୀତ ଗାଉଥିଲେ; ସଭାସମିତି କରୁଥିଲେ । ଏଠାରେ ଆମେ କେତେ ନାଟକ ଦେଖୁଥିଲୁ । ଯେତେ ବରଷା, ବତାସ ଆମକୁ ଦୋହଲାଇ ପାରୁ ନଥିଲା ।'' ''ପ୍ରତିଦିନ ସକାଳୁ ସଞ୍ଜ ଯାଏଁ ଆମେ ସୂର୍ଯ୍ୟ ଆଲୁଅରେ ଝଲସୁ ଥିଲୁ । ଖରା ଖାଇ ଖାଇ ଆମେ ତାତି ଯାଉଥିଲୁ । ରାତି ହେଲେ ଥଣ୍ଡା ପବନ ଖାଇ ଆମେ ପୁଣି ଥଣ୍ଡା ହୋଇ ଯାଉଥିଲୁ । ଦିନ ବେଳର ତାତି ଆଉ ରାତିର ଥଣ୍ଡା ପବନ ଆମକୁ ଖୁବ୍ ଆରାମ ଲାଗୁଥିଲା । ଏମିତି, କେତେ ଦିନ ଯାଏଁ ଆମର ମଉଜ ଚାଲିଲା । ଦିନେ ଦିନେ ଖରାବେଳେ ଆମ ଦେହ ନିଆଁ ଭଳି ତାତିଥିଲା ବେଳେ ହଠାତ୍ ଅସରାଏ ବରଷା ହୋଇ ଯାଉଥିଲା । ତାତିଲା ଦେହଟାରେ ପାଣି ପଡ଼ିଲେ ପାଣି ବାମ୍ଫ ହୋଇ ଧୂଆଁ ଉଠୁଥିଲା । ଆମେ ଶୀଘ୍ର ଥଣ୍ଡା ହୋଇ ଯାଉଥିଲୁ ।''

''ଏହି ଖରା, ଥଣ୍ଡାର ଅନୁଭୂତି ଆମକୁ ଅଧିକ ଜୀବନ୍ତ କରି ଦେଉଥିଲା । ଖରା ଖାଇଲେ ତାତି ଯାଇ ଆମ ଆକାର ଫୁଲି ଉଠୁଥିଲା । ଥଣ୍ଡା ହେଲେ ଏହା ପୁଣି ଆକାରରେ ଛୋଟ ହୋଇ ଯାଉଥିଲା । ମନେ ହେଉଥିଲା ଯେପରି ଆମେ ନିଃଶ୍ୱାସ ପ୍ରଶ୍ୱାସ ଚଳାଉଛୁ । କେତେବେଳେ ଦେହଟି ଫୁଲି ଉଠୁଥିଲା ତ କେତେବେଳେ ଶୁଖି ଯାଉଥିଲା । କିନ୍ତୁ ଖରାବେଳେ ବର୍ଷା ହେଲେ ବେଶୀ ଅସୁବିଧା ହେଉଥିଲା । ଖରାରେ ଫୁଲି ଯାଇଥିବା ଦେହଟା ଆକାରରେ ସାଙ୍ଗେ ସାଙ୍ଗେ କମି ପାରୁ ନଥିଲା । କିନ୍ତୁ ଥଣ୍ଡା ପାଣି ଆମକୁ ଆକାର କମାଇବା ପାଇଁ ବାଧ୍ୟ କରୁଥିଲା । ଫଳରେ ଆମ ଦେହରେ ଫାଟ ଦେଖା ଦେଉଥିଲା । ଏପରି ଗରମ-ଥଣ୍ଡା କାମ ବର୍ଷ ବର୍ଷ ଧରି ଚାଲିବା ଦ୍ୱାରା ଫାଟଟି ଆକାରରେ ବେଶ୍ ବଢ଼ିଗଲା ।''

''କ୍ରମେ ଫାଟଟି ବଢ଼ି ପଥରଟିକୁ ଦୁଇ ଖଣ୍ଡ କରିଦେଲା । ଛୋଟ ଖଣ୍ଡଟି ମୂଳ ଖଣ୍ଡଟିରୁ ଅଲଗା ହୋଇଗଲା । ଛୋଟ ଖଣ୍ଡଟିର ପଛରେ କୌଣସି ଡିରା ନଥିଲା । ଏହା ତଳକୁ ଖସିଗଲା । ବିରାଟକାୟ ଖଣ୍ଡଟା ଗଡ଼ି ଆସି ଆଉ ଏକ ବିରାଟ ପଥର ଦେହରେ ବାଡ଼େଇ ହେଲା । ବିରାଟ ଖଣ୍ଡଟା

ଆହୁରି ଛୋଟ ହୋଇ ଭାଙ୍ଗିଗଲା । ବଡ଼ ବଡ଼ ପଥର ଖଣ୍ଡ ସବୁ ଏଣେ ତେଣେ ବିଛାଇ ହୋଇ ପଡ଼ିଲା । ମୁଁ ଏପରି ଗୋଟିଏ ଖଣ୍ଡ ଆକାରରେ ତଳକୁ ଗଡ଼ି ଚାଲିଲି । ମୋର ହାତୀ ପରି ଆକାରଟା ଛୋଟ ହେବାରେ ଲାଗିଲା । ବାଟର ଅନ୍ୟ ପଥରରେ ବାଡ଼େଇ ହୋଇ ଓ ମାଟିରେ ଘୋରି ହୋଇ ମୁଁ ଛୋଟ ହୋଇ ଚାଲିଥାଏ ।''

''ଅନେକ ଛେଚା କଚଡ଼ା ଖାଇ ଖାଇ ମୁଁ ଗୋଟିଏ ପଇଡ଼ ଆକାରର ପଥର ହୋଇ ଯାଇଥିଲି । ଶେଷରେ ମୁଁ ଆସି ପାହାଡ଼ ତଳ ଝରଣାରେ ପଡ଼ିଲି । ନଈ ମୋ ଉପରେ ରାଗିବ କ'ଣ ଓଲଟା ମତେ ଦେଖି ହସିଲା ଓ କହିଲା - ଆଗେଇ ଚାଲ୍... ଆଗେଇ ଚାଲ୍ । ମୁଁ ଖୁସିରେ ତା' ସହ ହାତ ମିଳାଇଲି । ଦେଖିଲି - ମୋ ଭଳି ସାନ ବଡ଼ ଅନେକ ପଥର ନଈ ସହ ଗୀତ - ତାଳ ମିଳାଇ ଆଗକୁ ଧାଉଁଛନ୍ତି । ମୁଁ ଜାଣି ନଥିଲି ଏମାନଙ୍କ ସହିତ ମୁଁ କୁଆଡ଼େ ଯିବି । କିନ୍ତୁ ସେମାନଙ୍କ ହସ, ଖୁସି ଓ ମଉଜ ମୋତେ ହରି ନେଲା । ମୁଁ ସବୁ ଭୁଲିଗଲି । ମୁଁ ବି ଏକା ସ୍ୱରରେ ତାଙ୍କ ସହ ସୁର ମିଳାଇଦେଲି । ଗୀତ ଗାଇ ଗାଇ ମୁଁ ତଳକୁ ତେଇଁ ତେଇଁ ଧାଇଁ ଚାଲିଲି ।''

''ଆଗ ମୁଁ ଆବୁଡ଼ା ଖାବୁଡ଼ା ଡିମା ପଥରଟିଏ ଥିଲି । ନଈ ସହ ଧାଇଁବା ଦ୍ୱାରା ଅନ୍ୟ ପଥର ଓ ନଈବାଲିରେ ଘୋରି ହୋଇ ମାଜି ହୋଇଗଲି । ଏଥର ମୁଁ ଗୋଟିଏ ସୁନ୍ଦର ଗୋଲ ପଥର ବନିଗଲି । ମୁଁ ଖୁବ୍ ସୁନ୍ଦର ଦେଖାଯାଉଥାଏ ।''

''ମତେ ଆଉ ଆଗ ଭଳି ଗଡ଼ିବାରେ ଜମା ଅସୁବିଧା ହେଉ ନଥାଏ । ବଲ୍‌ଟିଏ ପରି ଅବିରାମ ମୁଁ ନଈ ସୁଅରେ ଜୋର୍‌ରେ ଗଡ଼ି ଚାଲିଥାଏ । ତଳର ବାଲି ଓ ମାଟିରେ ଘୋରି ହୋଇ ମୋ ଦେହରୁ ଅନେକ ସରୁ ବାଲି ଗରଡ଼ା ଝଡ଼ି ପଡୁଥାଏ । ତାହା ବି ଅନ୍ୟ ବାଲିଗରଡ଼ା ଭଳି ଆଗକୁ ମାଡ଼ି ଯାଉଥାଏ । ଅନେକ ବାଟ ଧାଇଁ ଧାଇଁ ମୁଁ ସମତଳ ଭୂଇଁରେ ପହଞ୍ଚିଲି । ପାଣି ସାଙ୍ଗକୁ ମୋର ବି ବେଗ କମିଗଲା । କିନ୍ତୁ ତଥାପି ମୁଁ ଘୋରି ହୋଇ ଚାଲିଲି । କେତେ ମାସର ଏପରି ଘୋରଣା ଓ ଦଉଡ଼ା ଭିତରେ ମୁଁ ଆଜିର କୁନି ବାଲିଗରଡ଼ା ରୂପଟି ପାଇଲି ।

ଖରାଦିନ ଆସିଲା । ନଈରେ ପାଣି କମିବାରେ ଲାଗିଲା । ସେ ଆମକୁ ଆଉ ତା କୋଳରେ ଧରି ରଖି ପାରିଲାନି । ନିଜେ ସେ ଶୁଖିଶୁଖି ସରୁଆ ପାଣି ଧାରଟିଏ ବନିଗଲା । ଆମେ ଅନେକ ବାଲିଗରଡ଼ା ନଈ ମାଆଠୁ ଅଲଗା ହୋଇ ନଈ ପଠାରେ ପଡ଼ି ରହିଲୁ । ପୁଣି ବରଷା ଦିନ ଆସିଥିଲେ ଆମେ ନଈ ସୁଅରେ ଭାସି ଚାଲିଥାନ୍ତୁ । ହୁଏତ ଏମିତି ଧାଇଁ ଧାଇଁ ମୁଁ ଆହୁରି ଛୋଟରୁ ଛୋଟତର ହୋଇ ଚାଲିଥାନ୍ତି । ଶେଷରେ ମୁଁ ପାଣିରେ ମିଶି ଯାଇଥାନ୍ତି । ପାଣି ସୁଅରେ ଯାଇ ଅନନ୍ତ ସାଗରରେ ମିଶି ଯାଇଥାନ୍ତି ।... କିନ୍ତୁ ପବନ ଭାଇ ମୋତେ ଉଡ଼ାଇ ନେଇ ତୋ ସାଙ୍ଗରେ ସାଙ୍ଗ କରାଇଦେଲା ।''

ଏସବୁ କଥା ମାମୀକୁ ସପନରେ ଆଉ ଏକ ସପନ ପରି ଲାଗୁଥାଏ । ଏକ ବିଶାଳକାୟ ପଥର, ଯାହାକୁ ଟାଙ୍ଗିଆରେ ହାଣିଲେ ଟାଙ୍ଗିଆ ବଙ୍କା ହେଇ ଭାଙ୍ଗିଯିବ, ସେ ପୁଣି ନିଜେ ନିଜେ ଏପରି ଅଦ୍ଭୁତ ରୂପ ପାଇପାରେ, ତାହା ସେ ଭାବି ପାରୁ ନଥାଏ । କିନ୍ତୁ ତା'ର ଏହି ଆଶ୍ଚର୍ଯ୍ୟ ଭାବ ତା'ର କୌତୂହଳୀକୁ ତେଜି ଦେଇଥାଏ । ସେ ଭାବୁଥାଏ - ଏହା ତ କିଛି ବି ମନଗଢ଼ା କାହାଣୀ ନୁହେଁ । ଏକ ସତ କଥା । ପୁଣି ଏହି ବିଚିତ୍ର ନାଟକର ନାୟକ ନିଜେ ତାକୁ ବୁଲାଇ ବୁଲାଇ ତା' ଜୀବନ କାହାଣୀ ଶୁଣାଇ ଓ ଦେଖାଇ ଚାଲିଛି । ମାମୀ ଏଇଆ ହିଁ ଚାହୁଁଥିଲା । ଅତି ଖୁସି ହୋଇ ସେ ବାଲିଗରଡ଼ାକୁ ପୁଣି ପଚାରିଲା, ''ବନ୍ଧୁ ! ପଥର ରୂପରେ ତୁମେ କେଉଁଠୁ ଆସିଲ ? ତା ଆଗରୁ ତୁମେ କେଉଁଠି ଓ କି ରୂପରେ ଥିଲ ?''

ବାଲିଗରଡ଼ା ଆଗରୁ କାହାକୁ ଏମିତି ନିଜ ଦୁଃଖ ସୁଖ ଶୁଣାଇ ନଥିଲା । ତା' ମନକୁ ବୁଝୁଥିବା ସାଙ୍ଗଟିଏ ପାଇ ସେ ବି ଅତି ଖୁସି ହୋଇ ଯାଇଥିଲା । ସେ ତା'ର ପୂର୍ବ କାହାଣୀ ଶୁଣାଇବାକୁ ଆରମ୍ଭ କଲା...

''ମୋ ଜୀବନ ବଡ଼ ବିଚିତ୍ର । ତୁ ଏବେ ଯେଉଁ ବିଶାଳ ପଥର ଦେଖୁଛୁ, ଏହା ମୋର ଏକକ ରୂପ ନୁହେଁ । ପଥରକୁ ଲାଗି ରହିଥିବା ଚାରିପଟର ମାଟି, ଗଛଲତା, ପାଣି ଆଦି ସହ ମୋର ଅନେକ ମେଳ ଓ ବନ୍ଧୁତା ରହିଛି । ତୁ ସିନା ମତେ ଏମିତି ଏକ ବିଶାଳ ପଥର ରୂପରେ ଦେଖି



ଚମକି ପଡୁଛୁ, କିନ୍ତୁ ମୁଁ ପ୍ରକୃତରେ ଧୂଳି, ମାଟିରେ ତିଆରି । ଏହା ଶୁଣିବାକୁ ତୋତେ ଅଡୁଆ ଲାଗୁଥିବ । କିନ୍ତୁ ଏହା ସତ କଥା ।''

ମାମୀ ତାଟକା ହୋଇ ତାକୁ ଚାହିଁଥାଏ । ତା'କୁ ଏସବୁ କଥା ନୂଆ ଲାଗୁଥାଏ । ସେ ଆଖି, କାନ ପାରି ମନ ଖୁସିରେ ଶୁଣୁଥାଏ । ସେ ସହଜରେ ଏକଥା ବୁଝିପାରିବା ପାଇଁ ବାଲିଗରଡ଼ା ତା'କୁ ପୁଣି ଉଡ଼ିବାକୁ ଡାକିଲା । ଏଥର ସେମାନେ ଉପରକୁ ଉଡ଼ିଚାଲିଲେ । ଏତେ ଉପରକୁ ଉଠିଗଲେ ଯେ, ପୃଥିବୀର ଏକ ବିଶାଳ ଅଂଶ ସେମାନେ ସ୍ପଷ୍ଟ ଭାବେ ଦେଖିପାରିଲେ । କାଗଜ ଉପରେ ମାନଚିତ୍ର ଦେଖିଲା ପରି ସେମାନେ ପୃଥିବୀର ସତ ଛବିଟି ଦେଖୁଥାଆନ୍ତି । ବାଲିଗରଡ଼ା ମାମୀକୁ ଦେଖାଇ ଦେଲା - ''ଏଇଟା ନଦୀ (ସୂତା ଖିଅଟିଏ ପରି ଦେଖା ଯାଉଥାଏ), ଏଇଟା ଜଙ୍ଗଲ, ପାହାଡ଼, ସହର, ଗାଁ, ପୋଖରୀ, ପଥର, ଖେଳ ପଡ଼ିଆ ଇତ୍ୟାଦି

ଇତ୍ୟାଦି । ପୃଥିବୀ ଉପରେ ଏମିତି କେତେ ଖାଲ, ଢିପ, ପାହାଡ଼, ନଈ, ଜଙ୍ଗଲ, ମରୁଭୂମି, ଆଗ୍ନେୟଗିରି, ସମୁଦ୍ର ଆଦି ରହିଛି ।''

''ଏ ସମସ୍ତଙ୍କ ଭିତରେ ଏକ ସୁନ୍ଦର ସମ୍ପର୍କ ରହିଛି । ବାଲିଗରଡ଼ା ରୂପରେ ମୁଁ ଏତେ ଛୋଟ ହେଲେ ବି ବିଶାଳ ପାହାଡ଼, ପଥର ଓ ସମୁଦ୍ର ସହ ମଧ୍ୟ ମୋର ସମ୍ପର୍କ ରହିଛି । ବିଶାଳ ପଥରରୁ ଚୂନା ହୋଇ ମୁଁ ଆଜି କୁନି ବାଲିଗରଡ଼ା ରୂପରେ ଅଛି । କାଲିକି ପୁଣି ନଈରେ ବହିଯାଇ ସମୁଦ୍ର ବେଳାଭୂମିରେ ବାଲିକଣାଟିଏ ହୋଇ ସମୁଦ୍ରର ଶୋଭା ବଢ଼ାଇପାରେ ବା ସମୁଦ୍ରର ଜଳରାଶିରେ ଲୀନ ହୋଇ ଯାଇପାରେ କିମ୍ବା ଅନେକ ବାଲିକଣା ସହ ମିଶି ମାଟି ବା ବଡ଼ ପଥର ବି ଗଢ଼ିପାରେ ।''

ପୃଥିବୀ ଉପରେ ସୂର୍ଯ୍ୟର ଏକ ବଡ଼ ପ୍ରଭାବ ରହିଥାଏ । ସୂର୍ଯ୍ୟକିରଣ ପଡ଼ିଲେ ପୃଥିବୀର ମାଟି, ପାଣି, ପବନ ସବୁ ତାତିଯାଏ । ପାଣି ବାମ୍ପ ହୋଇ ଉପରକୁ ଉଠେ । ପବନ ସାଥିରେ ମେଘ ରୂପରେ ଭାସି ବୁଲେ । ଅଧିକ ଜଳକଣା ମିଶି ମେଘ ଘନୀଭୂତ ହୁଏ । ବର୍ଷା ଟୋପା ରୂପରେ ମାଟି ଉପରେ ପଡ଼େ । ମାଟିରେ ଏଥି ସହ ଧୂଳି, ମାଟି ଗୋଳେଇ ହୋଇ ପାଣି ଗୋଳିଆ ଦିଶେ । ଖାଲ ଆଡ଼କୁ ବହୁ ବହୁ ମାଟିରେ ସିଆର କାଟେ । ବରଷା ବଢ଼ିଲେ ଭୂମି ଉପରେ ନଈ, ନାଳ ଛୁଟେ । ଗୋଟିଏ ଜାଗାର ମାଟି ବହିଯାଇ ଆଉ ଏକ ଜାଗାରେ ଜମିଯାଏ । ଭୂମିର ରୂପ ବଦଳି ବଦଳି ଚାଲେ ।

''ବନ୍ୟା, ବାତ୍ୟା ହେଲେ ଭୂମିର ରୂପ ଅଧିକ ବଦଳିଯାଏ । ଭୂମି କମ୍ପିଲେ ବା ଆଗ୍ନେୟଗିରି ଦେଖାଦେଲେ ଭୂମି ରୂପ ବିଚିତ୍ର ଭାବରେ ବଦଳିଯାଏ । କେଉଁଠି ତଳ ମାଟି ଉପରକୁ ଉଠିଆସେ । ସମୁଦ୍ର ଜାଗାରେ ବିଶାଳ ପାହାଡ଼ ଠିଆ ହୁଏ । କେଉଁଠି ପୁଣି ପାହାଡ଼ ଶ୍ରେଣୀ ତଳକୁ ଧସିଯାଇ ହ୍ରଦ, ସମୁଦ୍ର ପରି ଖାଲୁଆ ଭୂମି ସୃଷ୍ଟି କରେ । ଇତିହାସ କହେ ଯେ, ହିମାଳୟ ପର୍ବତ ଶ୍ରେଣୀ ଜାଗାରେ ଆଗରୁ ବିଶାଳ ସାଗର ଥିଲା । ପୃଥିବୀ ଉପରେ ବିଭିନ୍ନ ଅଦଳ ବଦଳ ଏପରି ଲଗାତାର ଲାଗି ରହିଥାଏ । ଏପରିକି ପୃଥିବୀର ଉପର ଖୋଳଟି ବି ସ୍ଥିର ନୁହେଁ । ତଳର ତରଳ ମାଣ୍ଟଲ୍

ସ୍ତର ଉପରେ ଏହା ଭାସୁଛି । ଏହାର ଅନେକ ଶୃଙ୍ଖଳା ଖଣ୍ଡ ବେଳକୁ ବେଳ ଘୁଞ୍ଚିବାରେ ଲାଗିଛି । ତେଣୁ ପୃଥିବୀର ଉପର ରୂପ ଲଗାତାର ବଦଳି ଚାଲିଛି ।''

''ମାଟି, ପାଣି, ପବନ ଭିତରେ ଏକ ବିଚିତ୍ର ସମ୍ପର୍କ ରହିଛି । ଆଜି ଆମେ ଯେଉଁ ମାଟିକୁ ଦେଖୁଛେ, କୋଟିଏ ବର୍ଷ ପରେ ହୁଏତ ତାହା ଆଉ ଏକ ସମ୍ପୂର୍ଣ ନୂଆ ରୂପ ପାଇଥିବ । ପ୍ରତିଦିନ ଆମର ଭୂଇଁ ଉପରେ ଗଛଲତା, ପଶୁପକ୍ଷୀଙ୍କ ଶବ, ଧୂଳି ବାଲି ଆଦି ଜମିବାରେ ଲାଗିଛି । ଆମ ଅଜାଣତରେ ପ୍ରତିଦିନ ମାଟିର ସ୍ତର ବଦଳିବାରେ ଲାଗିଛି । ଗୋଟିଏ ଜାଗାରୁ ଧୂଳିମାଟି ଉଡ଼ିଯାଇ ଆଉ ଏକ ଜାଗାରେ ଜମୁଛି । ପାଣି, ପବନ ଓ ସୂର୍ଯ୍ୟ କିରଣର ଏଥିରେ ଏକ ବଡ଼ ଭୂମିକା ରହିଛି । ଏପରି ଜମିଚାଲିବା ସହିତ କାଲିର ମାଟି ଉପରେ ଚାପ ଆଜି ବଢ଼ିଛି । କାଲିକି ଏହା ଉପରେ ଅଧିକା ମାଟି ଜମିବା ସହିତ ଚାପ ଆହୁରି ବଢ଼ିଯିବ ।''

''ଏପରି ଲକ୍ଷ ଲକ୍ଷ ବର୍ଷର ଚାପ ଏତେ ବଢ଼ିଯାଏ ଯେ, ସେ ଜାଗାର ଚିପା ମାଟି ମୁଣ୍ଡାଟି ଏକ ବିଶାଳ ପଥରର ରୂପ ନିଏ । ଜୀବଜନ୍ତୁ, ଗଛଲତାଙ୍କ ଦେହ ବି ଜୀବାଶ୍ମ ରୂପରେ ପଥର ପରି ଟାଣୁଆ ଓ ଓଜନିଆ ହୋଇଯାଏ । ମାଟି ଚାପି ହୋଇ ପଥର ହେବା ଓ ପଥର ଭାଙ୍ଗି ଭାଙ୍ଗି ମାଟି ହେବା ପ୍ରକୃତିର ଏକ ଚିରନ୍ତନ ଧାରା । ଏହି ଧାରା ଯୋଗୁଁ ପ୍ରକୃତିର ରୂପ ପ୍ରତି ମୁହୂର୍ତ୍ତରେ ବଦଳିବାରେ ଲାଗିଛି । ଆମେ (ତୁ, ମୁଁ ଓ ସମସ୍ତେ) ମଧ୍ୟ ପ୍ରତି କ୍ଷଣରେ ବଦଳି ଚାଲିଛେ ।''

''ମୁଁ ମୋର ପୂର୍ବ ରୂପ.... ପଥର ବିଷୟରେ ତୋତେ କହୁଥିଲି । ମୋର ଜନମ ଏପରି ହିଁ ହୋଇଥିଲା ।'' ବାଲିଗରଡ଼ା ଏଥର ମାମୀ ମୁହଁକୁ ଚାହିଁଲା । କହିଲା, ''ମାମିନୀ, ତୋର ପ୍ରଶ୍ନ ପଚାରିବା କ'ଣ ସରିଗଲା ? ଆଉ ପଚାରୁ ନାହୁଁ ଯେ ?'' ମାମୀ କହିଲା, ''ପ୍ରଶ୍ନ ସରିବ ? ଏବେ ତ ମୋ ମନରେ ଆଗଠୁଁ ଆହୁରି ଅଧିକ ପ୍ରଶ୍ନ ଚେର ଧରିଲାଣି । ମୋର ଅଧିକାରୁ ଅଧିକା ଜାଣିବାକୁ ମନ ହେଉଛି । ମୁଁ ଭାବୁଛି ତୋତେ କେଉଁ



ପ୍ରଶ୍ନଟି ଆଗ ପଚାରିବି । ମାଟି, ଗଛ, ପାହାଡ଼, ମଣିଷ, ଆକାଶ, ସୂର୍ଯ୍ୟ ଏମିତି ସମସ୍ତେ ମତେ ଉସୁକାଇ ଚାଲିଛନ୍ତି । କେଉଁଠୁ ଆରମ୍ଭ କରିବି ତା' ମୁଁ ଜାଣି ପାରୁ ନାହିଁ । ମୁଁ ଦେଖୁଛି ତୁ ତ ଏ ସମସ୍ତଙ୍କୁ ଜାଣିଛୁ ଓ ସେମାନଙ୍କ ବିଷୟରେ ବୁଝାଇ ପାରୁଛୁ । ଏ ସମସ୍ତଙ୍କ ଭିତରେ ଏକ ସୁନ୍ଦର ସମ୍ପର୍କ ରହିଛି । ଆଚ୍ଛା, ତୁ କହି ପାରିବୁ ଏ ସମସ୍ତଙ୍କର ଆରମ୍ଭଟି କେଉଁଠାରୁ ?''

ବାଲିଗରଡ଼ା କହିଲା, ''ନୁହେଁ କାହିଁକି ? ମୁଁ ଯେତିକି ଜାଣିଛି ନିଶ୍ଚୟ କହିପାରିବି । କିନ୍ତୁ ମତେ ଗୋଟିଏ କଥା ଆଶ୍ଚର୍ଯ୍ୟ ଲାଗୁଛି ।'' ମାମୀ ତା' ମୁହଁକୁ ଚାହିଁଲା । ବାଲିଗରଡ଼ା ବି ମାମୀ ମୁହଁକୁ ଚାହୁଁଥାଏ । ବାଲିଗରଡ଼ା କହିଲା, ''ମାମିନୀ... ତୁମ୍ଭ ମଣିଷମାନଙ୍କର ଏହି କୌତୂହଳଟି ମତେ ବଡ଼ ବିଚିତ୍ର ଓ ଆଶ୍ଚର୍ଯ୍ୟ ଲାଗେ । ତୁମକୁ ହିଁ ପ୍ରକୃତି ଏହି ଚମତ୍କାର କଳାଟି ଦେଇଛି । ଅନ୍ୟ ଯେତେ ପଶୁ ପକ୍ଷୀ, ଗଛଲତାଙ୍କ ଠାରେ ଏହି ଦକ୍ଷତାଟି

କମ୍ । ସେମାନେ କେବଳ ଖାଇବା, ଶୋଇବା, ବଂଶ ବଢ଼ାଇବା ଓ ଶତ୍ରୁ କବଳରୁ ନିଜକୁ ରକ୍ଷା କରୁ କରୁ ହିଁ ତାଙ୍କର ବେଳ, କାଳ ସରିଯାଏ । କିନ୍ତୁ ତୁମେମାନେ ଜୀବନରେ କେତେ ନୂଆ ନୂଆ କାମ କରିପାର । ତୁମେ ଜୀବ ଜନ୍ତୁଙ୍କ ଠାରୁ ଅନେକ କିଛି ଗଢ଼ିପାର, ଚିନ୍ତା କରିପାର, ନୂଆ ବାଟ ଓ କଉଶଳ ବାହାର କରିପାର । ପୃଥିବୀର ମାଟି, ପାଣି, ପବନ ଓ ଜୀବନର ଅନେକ ଗୂଢ଼ ରହସ୍ୟକୁ ବୁଝିପାର । ତୋ' ପରି କୁନି ବୟସରୁ ହିଁ କେତେ ପ୍ରଶ୍ନ ପଚାରିପାର ଓ ଉତ୍ତର ଖୋଜିପାର । ଚମତ୍କାର ତୁମର ଏହି କଳାଟି । ମୁଁ ବହୁତ ଖୁସି ତୋ ପରି ସାଙ୍ଗଟିଏ ପାଇ ।''

ଏ କଥା ଶୁଣୁ ଶୁଣୁ ମାମୀର ଆଖିରୁ ଦୁଇ ଧାର ଲୁହ ବୋହିଗଲା । ସେ ଶକେଇ ଶକେଇ କହିଲା, ''ହଁ... ହଁ... ବାଲିଗରଡ଼ା । ତୋ' ପରି ମୁଁ ବି ଯଥେଷ୍ଟ ଖୁସି ତୋ' ପରି ଅନ୍ତରଙ୍ଗ ସାଙ୍ଗଟିଏ ପାଇଥିବାରୁ । କିନ୍ତୁ ଗୋଟିଏ କଥା ଭାବିଲେ ଦୁଃଖ ଲାଗୁଛି ଯେ, ତୋ' ପରି ମୁଁ ବି କିପରି ଚାରିପାଖର ପ୍ରଶ୍ନଗୁଡ଼ିକର ଉତ୍ତର ପାଇପାରିବି ? ମୁଁ ସମସ୍ତଙ୍କୁ କେତେ ପ୍ରଶ୍ନ ପଚାରୁଛି, କିନ୍ତୁ କେହି ବି ମୋତେ ଉତ୍ତର ଦେଉ ନାହାନ୍ତି । ସମସ୍ତେ ଚୁପ୍ ରହୁଛନ୍ତି ବା କଥାକୁ ଆଡ଼େଇ ଦେଇ କହୁଛନ୍ତି - ବଡ଼ ହେଲେ ଆପେ ଆପେ ବୁଝିଯିବି । ମୁଁ କ'ଣ କଲେ ଏସବୁର ଉତ୍ତର ପାଇପାରିବି କହିଲୁ ।''

ବାଲିଗରଡ଼ା ହସିଲା । ମାମୀର କାନ ପାଖକୁ ଉଠି ଆସି କହିଲା - ''ମାମିନୀ... ତୁ ଜଣେ ବିଜ୍ଞାନୀ । ତୋ' ପରି କୌତୂହଳୀ ଓ ଆଗ୍ରହୀ ପିଲାଟିଏ ମୁଁ ଆଗରୁ କେଉଁଠି ବି ଦେଖି ନାହିଁ ।'' ମାମୀ ମନେ ମନେ ଆଶ୍ଚର୍ଯ୍ୟ ହେଉଥାଏ । ସେ କିପରି ଜଣେ ବୈଜ୍ଞାନିକ ହୋଇଗଲା ? ବୈଜ୍ଞାନିକମାନେ କୁଆଡ଼େ ଅନେକ ପାଠ ପଢ଼ିଥାନ୍ତି, ଗବେଷଣାଗାର ଭିତରେ ଜଟିଳ ଯନ୍ତ୍ରପାତି ଧରି ପରୀକ୍ଷା ଚଳାଇଥାନ୍ତି । ଟି.ଭି., କମ୍ପ୍ୟୁଟର୍, ଉଡ଼ାଜାହାଜ, ରକେଟ୍ ଆଦି ବନାନ୍ତି । କେତେ ଅବୁଝା ସୂତ୍ର, ନିୟମ, ଜାଣିଥାନ୍ତି । ସେମାନେ ତ ଜଣେ ଜଣେ ଯାଦୁକର । ବୈଜ୍ଞାନିକ କହିଲେ ତ ତାଙ୍କ ଘରେ ସମସ୍ତଙ୍କ ଆଖି ଦୁଇଟା ଉପରକୁ ଖୋସି ହୋଇଯାଏ । ଦିନେ ତାଙ୍କ ଗାଁକୁ ଜଣେ ବୈଜ୍ଞାନିକ ଆସିଥିଲେ । ସେ ଯେମିତି ଚିକ୍କଣ ଚହଟ

ହୋଇଥିଲେ ଦେଖିଲେ ଲାଗୁଥିଲା, ସେ ଆଉ କେଉଁ ରାଇଜରୁ ଆସିଛନ୍ତି । କି' କଥା କହିଲେ କେଜାଣି ମାମୀ ସେଥିରୁ ପଦଟେ ବି ବୁଝିପାରିଲା ନାହିଁ। ମା', ବାପା ପରେ କଥା ହେଉଥିଲେ ଯେ, ସେ ମହକାଶ ବିଷୟରେ ବଢ଼ିଆ କହିଲେ । ସେ କୁଆଡ଼େ ଅନେକ କଥା ଜାଣନ୍ତି । ତାଙ୍କୁ ବୁଝିବା ଆମ ପାଇଁ ଭାରି କଠିନ । ସେ ଦିନଠୁ ମାମୀ ଧରି ନେଇଥିଲା ଯେ, ବିଜ୍ଞାନ ହେଉଛି ଏମିତିକା ଚମତ୍କାରିତା ସବୁ ।

ବାଲିଗରଡ଼ା ଖୁବ୍ ଜୋର୍‌ରେ ହସି ହସି ତଳକୁ ଗଡ଼ିପଡ଼ିଲା । ପୁଣି ଉଠି କହିଲା, ''ଆରେ.... ଆରେ.... ମାମିନୀ.... ତୋ' ପରି ଜଣେ ଭଲ ବିଜ୍ଞାନୀ ବି ଏମିତି ଧୋକା ଖାଇଗଲା ? ଆରେ ଶୁଣ୍.... ତୁ ଏବେ କେତେ କଳକବଜା, ଯନ୍ତ୍ରପାତି, ସୂତ୍ର, ନିୟମର ନାଁ ସବୁ କହିଗଲୁ । କିନ୍ତୁ ମନ ଦେଇ ଭାବିଲୁ ଦେଖି... ଏ ସବୁ ଚମତ୍କାରିତାର ଆରମ୍ଭ କେଉଁଠୁ ?''

ମାମୀ ଭାବିବାରେ ଲାଗିଲା । ଏଗୁଡ଼ିକର ଆରମ୍ଭ କେଉଁଠୁ ? ଗବେଷଣାଗାରରୁ ହିଁ ହୋଇଥିବ । ଧରାଯାଉ ଉଡ଼ାଜାହାଜ । ଏହାକୁ ବୈଜ୍ଞାନିକମାନେ ହିଁ ଗବେଷଣାଗାରରେ ବନାଇଥିବେ । ତା'ପରେ ଏହାକୁ କୌଣସି କମ୍ପାନୀ ଅଧିକ ସଂଖ୍ୟାରେ ବନାଇ ବିକ୍ରି କରିଥିବ । ବାଲିଗରଡ଼ା କହିଲା - ''ତୋତେ ଏହାର ଆହୁରି ପଛକୁ ଦେଖିବାକୁ ପଡ଼ିବ । ଆଚ୍ଛା ଭାବିଲୁ, ଯେଉଁ ବୈଜ୍ଞାନିକମାନେ ଏହାକୁ ଆଜିର ରୂପ ଦେଇଛନ୍ତି, ସେମାନେ କାହାଠୁ ଏହା ଶିଖିଲେ ! ତାଙ୍କ ଆଗରୁ ବି ଅନେକ ବୈଜ୍ଞାନିକ ଏହା ବନାଉଥିଲେ । କିନ୍ତୁ ସେମାନଙ୍କ ଉଡ଼ାଜାହାଜ ଠାରୁ ଆଜିର ଉଡ଼ାଜାହାଜର ଗୁଣ ଓ କ୍ଷମତା ଯଥେଷ୍ଟ ଉନ୍ନତ । ତାଙ୍କ ଆଗରୁ ବି ଅନେକ ବୈଜ୍ଞାନିକ ଏପରି ଉଡ଼ାଜାହାଜ ତିଆରି କରିବାର ସ୍ୱପ୍ନ ଦେଖିଥିବେ ଓ ଚେଷ୍ଟା କରିଥିବେ। ବହି ଓଲଟାଇଲେ ତୁ ଦେଖିବୁ ଯେ, ଏ ସବୁର ଆରମ୍ଭ ବାହାରର ଆଉ କେଉଁଠାରୁ ନୁହେଁ - ତୋ' ପରି କୌତୂହଳୀ ମଣିଷର ମୁଣ୍ଡରୁ । ଆଦିମ ମଣିଷ ଆକାଶରେ ଚଢ଼େଇକୁ ଦେଖି କେତେ ଖୁସି ହୋଇ ନଥିବ ସତରେ ! ଅନନ୍ତ ନୀଳ ଆକାଶରେ ଚଢ଼େଇଟି ଡେଣା ଝଡ଼ି ଉଡ଼ିଗଲେ, ତୁ ତା'କୁ ଦେଖି କେତେ କଥା ପଚାରିଛୁ ମନେ ପକାଇଲୁ ।'' (ମାମୀ ସନ୍ତୋଷଭରା ମୁହଁରେ ବାଲିଗରଡ଼ାଟିର ଚକଚକିଆ ମୁହଁଟିକୁ ଅନେଇଥାଏ ।)

''ପ୍ରକୃତିର ଅସରା ପସରାକୁ ଦେଖି ସେ ମନେ ମନେ କେତେ କଥା ପଚାରିଥିବ ଏଇଟା କ'ଣ ? କେଉଁଠୁ ଆସିଲା ? ଏମିତି କାହିଁକି ହେଉଛି ? ଏଥିରେ କ'ଣ ଅଛି ?.... ଏମିତି କେତେ କେତେ ପ୍ରଶ୍ନ । ଏସବୁକୁ ବୁଝିବା ପାଇଁ ସେ ଆହୁରି ନିରେଖି କରି ଜିନିଷ ଓ ଘଟଣାଗୁଡ଼ିକୁ ଦେଖିଥିବ । ମନ ଭିତରେ ଅନେକ ଚିନ୍ତା କରି ସେ କାରଣଟିଏ କଳ୍ପନା କରିଥିବ । ଧରାଯାଉ ଚଢ଼େଇଟିଏ । ସେ ଉଡ଼ିବାର ଦେଖି ମଣିଷ ତା'କୁ ନିରେଖି ଦେଖିଥିବ । କୁକୁର, ଗାଈ ଓ ନିଜ ସହ ତୁଳନା କରିଥିବ । ପ୍ରଥମେ ତା' ଆଖିରେ ପଡ଼ିଥିବ ଚଢ଼େଇର ହଲୁଥିବା ଡେଣା ଦିଓଟି । ସେ ବି ଆଗ୍ରହୀ ହୋଇ ଭାବିଥିବ - ମୁଁ ବି ଚଢ଼େଇ ପରି ଉଡ଼ି ପାରନ୍ତି କି ?''



"ତୁ ଶୁଣିଲେ ଖୁସି ହେବୁ ଯେ, ମଣିଷ ଖାଲି ଏମିତି ସପନ ଦେଖି ଅଟକି ଯାଇ ନଥିଲା । ସେ ଏହାକୁ ସତ କରିବା ପାଇଁ ଅନେକ ଧରଣର ପରଖମାନ କରିଥିଲା । କିଏ କିଏ ହାତରେ କୁଲା ବାନ୍ଧି ପକ୍ଷୀ ଭଳି ଉଡ଼ିବାକୁ ଚେଷ୍ଟା କରିଥିଲେ । କିନ୍ତୁ ସେଥିରେ ବା କେମିତି ଉଡ଼ିଥାନ୍ତେ କହିଲୁ ? ଉଚ୍ଚ ଜାଗାରୁ ଡେଇଁ କଚଡ଼ା ଖାଇ ପଡ଼ିଥିବେ । କିନ୍ତୁ ଏଥିରୁ ବେଶ୍ କିଛି ଶିଖିଥିବେ । ଏହି ଅସୁବିଧାକୁ ସୁଧାରିବା ପାଇଁ ଅନେକ ପରଖ ଚାଲିଥିବ । ଅନେକ ଦିନ ପରେ ମଣିଷ ବଡ଼ ଗୁଡ଼ି, ବେଲୁନ୍ ଓ ଗ୍ଲାଇଡର୍ ସାହାଯ୍ୟରେ ଆକାଶରେ ଭାସିବାକୁ ଚେଷ୍ଟା କଲା । କେଉଁଥିରେ ସେ ସଫଳ ହେଉଥାଏ ତ କେଉଁଠି ମଣିଷ ଦୁର୍ଘଟଣାଗ୍ରସ୍ତ ହୋଇ ଜୀବନ ହରାଉଥାଏ । କିନ୍ତୁ ପ୍ରତିଟି ପରଖ ଓ ଫଳ ତା ପାଇଁ ଏକ ମାଇଲ ଖୁଣ୍ଟିର କାମ ଦେଉଥାଏ । ଏହି ପରଖ ଆଜି ବି ଜାରି ଅଛି । ପ୍ରତି ଥରର ଶିକ୍ଷାକୁ ଆଧାର କରି ସେ କେତେ ନୂଆ କଉଶଳ ଓ ଯନ୍ତ୍ର ବାହାର କରିଛି । ଆଜିର ଯେତେ ଆଖିଦୃଶିଆ ଉଡ଼ାଜାହାଜ, ରକେଟ୍, ଉପଗ୍ରହ ସବୁ ଏହି ଲଗାତାର ପରୀକ୍ଷା, ଚିନ୍ତା ଓ ଗବେଷଣାର ଫଳ ।"

"ଏହା ଖାଲି ଉଡ଼ାଜାହାଜ ନୁହେଁ; ପ୍ରତି କ୍ଷେତ୍ରରେ କୌତୂହଳୀ ମଣିଷ ଏପରି ଖୋଜି ଚାଲିଛି ନୂଆ ବାଟ, ନୂଆ କୌଶଳ, ନୂଆ ଜ୍ଞାନ, ସୁଖ, ଖୁସି ଓ ଆନନ୍ଦ । କିନ୍ତୁ ଗୋଟିଏ କଥା ମନେ ରଖିବା । ପ୍ରତ୍ୟେକ ମଣିଷର ଏକ ସ୍ୱତନ୍ତ୍ର ରଚି ଥାଏ । କାହାକୁ ଚଢ଼େଇ ଭଲ ଲାଗେ । କାହାକୁ ପାହାଡ଼ ଭଲ ଲାଗେ । କାହାକୁ ପୁଣି ଆକାଶ ତ କାହାକୁ ଗଛଲତା । ନିଜକୁ ଭଲ ଲାଗିବା ବିଷୟରେ ମଣିଷଟିଏ ଲାଗି ରହେ-ଅଧିକ ଖୋଜେ, ପରଖେ, ବୁଝେ ଓ ନୂଆ ଜିନିଷ ଗଢ଼େ । ଏହି ଧାରାରେ ପୃଥିବୀ ସାରା ଲୋକ ନିଜ ରଚିର କାମରେ ଲାଗନ୍ତି । ବିଜ୍ଞାନର ବିଭିନ୍ନ କ୍ଷେତ୍ରରେ ଗବେଷଣା ଚାଲେ ନୂଆ ନୂଆ ଜ୍ଞାନ ମିଳେ । ନୂଆ ଜିନିଷ ବି ଗଢ଼ାହୁଏ ।"

"ଆଉ ଏକ କଥା ବି ମନେ ରଖିବୁ । ଜଣେ ଅନ୍ୟ ବିଷୟ ପ୍ରତି ଆଖି ମୁଜି କେବଳ ଗୋଟିଏ ବିଷୟରେ ମୁହଁ ମାଡ଼ି ଲାଗିଲେ ବି କିଛି ଲାଭ ନାହିଁ । ଜଣେ ଲାଗିପଡ଼ି ପରୀକ୍ଷା କରି ଯଦି ଆଗପରିକା 'ଚକ'ଟିଏ

ଆବିଷ୍କାର କରେ, ତେବେ ତାହା ବିଶେଷ ଉପଯୋଗୀ ହୋଇ ପାରିବ ନାହିଁ। ତେଣୁ ଜଣେ ପ୍ରଥମେ ସବୁ ବିଷୟରେ ଏକ ମୋଟାମୋଟି ଧାରଣା ପାଇବା ଦରକାର । ତା'ପରେ ସେ ନିଜ ମନଲାଖି ବିଷୟରେ ଗବେଷଣା କରିବେ । ନିଜ ବିଷୟ ସହ ଅନ୍ୟ ବିଷୟଗୁଡ଼ିକର ଗବେଷଣା ଧାରା ସହ ପରିଚିତ ନ ରହିଲେ ସେ କେବେ ଆଗେଇ ପାରିବେ ନାହିଁ । କାରଣ, ସବୁ ବିଷୟ ପରସ୍ପର ସହ ଯୋଡ଼ା । ଆମର ଗବେଷଣାଗାରଟି ଗୋଟିଏ - ତା ହେଉଛି ଆମ ଚାରି ପାଖର ଦୁନିଆଁ । ଏହାର ବିଭିନ୍ନ ଅଂଶ ପରସ୍ପର ସହ ନିବିଡ଼ ଭାବରେ ଯୋଡ଼ା । ତେଣୁ ଗବେଷଣାର ବିଷୟଗୁଡ଼ିକ ମଧ୍ୟ ସହଯୋଗିତା ମଧ୍ୟରେ ଚାଲିବା ନିହାତି ଜରୁରୀ । ପ୍ରତ୍ୟେକ ବିଷୟରେ ଗବେଷଣାର ସଫଳତା ଓ ବିଫଳତା ସହ ପରିଚିତ ରହିଲେ ହିଁ ନିଜ ଗବେଷଣାର ଦିଗଟି ଠିକ୍ ରହିପାରିବ ।''

ମାମୀ ସବୁ କଥାକୁ ମନଦେଇ ଶୁଣୁଥାଏ । ସେ ଅନୁଭବ କଲାଣି ଯେ, ବିଜ୍ଞାନ ହିଁ ତାର ସାଙ୍ଗ ଏହା ଜାଣିଲେ ସେ ତା'ର ସବୁ ପ୍ରଶ୍ନର ଉତ୍ତର ପାଇ ପାରିବ । ମନର ପ୍ରଶ୍ନଗୁଡ଼ିକୁ ସମସ୍ତଙ୍କୁ ପଚାରି ପଚାରି ସେ ଥକି ଯାଇଥିଲା । କିନ୍ତୁ ତା'ର କୁନି ସାଙ୍ଗଟି ଆଜି ତା'ର ଆଖି ଖୋଲି ଦେଇଛି । ସେ ମନେ ମନେ ତା'ର କୁନି ସାଙ୍ଗଟିକୁ ଖୁବ୍ ଭଲ ପାଉଥାଏ । ସେ ଚାହୁଁଥିଲା ତା'ର ସାଙ୍ଗଟି ତା' ପାଖରେ ସବୁବେଳେ ଏପରି ରହିଥାଉ । ତା' ସାଙ୍ଗରେ ଉଡ଼ି ବୁଲି ସେ ଦୁନିଆଁର ସବୁ ରହସ୍ୟକୁ ଖୋଲି ଦେଇ ପାରିବ ।

ତା'ର ଏହି ବିଚାର ଶୁଣି ବାଲିଗରଡ଼ା ହସିଲା । କହିଲା, ''ଆରେ ମାମିନୀ... ତୁ ଗୋଟିଏ କଥା ବୋଧେ ଭୁଲିଯାଇଛୁ । ମୋର ବି ଅନେକ କାମ ଅଛି । ମୁଁ କ'ଣ ସବୁବେଳେ ତୋ ପାଖରେ ଏମିତି ରହିପାରିବି ? ମୁଁ ମୋ ଜାଗାରେ ରହିବି । ସେଠାରେ ଆମେମାନେ କେତେ କାମ କରୁ । ମୋ ଦେହଟି ସିନା ଛୋଟ । କିନ୍ତୁ ମୋ ଭିତରେ ଅନେକ ମୂଲ୍ୟବାନ ଉପାଦାନ ଲୁଚି ରହିଛି । ତୁମ ପାଇଁ ମୁଁ ଛୋଟ ଓ ସାଧାରଣ ବାଲିଗରଡ଼ାଟିଏ । କିନ୍ତୁ କୁନି ଗଛଟିଏ ମତେ ଜାବୁଡ଼ି ଧରି ଉଧେଇପାରେ । ମୋ ଦେହରୁ ସାର ଶୋଷି ସେ ଆକାରରେ ବଢ଼େ । ଆମ ବାଲିଗରଡ଼ାଙ୍କ ଭିତରେ ବି ଅନେକ

ଦିଆନିଆ ଚାଲେ । କେତେବେଳେ ମୋ ଦେହରେ ନୂଆ ରସଟିଏ ବୋଲି ହୋଇଯାଏ । ଜିଆ ଆଦି ପୋକ ଆମ ଭିତରେ ବୁଲି ବୁଲି ବିବିଧ କାମ କରନ୍ତି । ମୋ ପାଇଁ ସେ କାମଟି ଜରୁରୀ ।''

''ଆଉ ଗୋଟିଏ କଥା ତୋତେ ଭଲ ଲାଗିପାରେ । ତା' ହେଉଛି ତୋ, ମୋ ଓ ବାକି ସବୁ ଜିନିଷ ଭିତରେ ଯଥେଷ୍ଟ ମେଳ ରହିଛି । ଆମ ସମସ୍ତଙ୍କ ଦେହ ଅସଂଖ୍ୟ ଅଣୁ, ପରମାଣୁରେ ଗଢ଼ା । ମୋ ଦେହଟି ଏତେ ଛୋଟ ହେଲେ ବି ଏହା ଭିତରେ କେତେ କୋଟି ପରମାଣୁ ରହିଛନ୍ତି । ତୁମ ଦେହରେ ସେତିକି ଅଧିକ ସଂଖ୍ୟାରେ ଏମାନେ ଅଛନ୍ତି । ଗଛଲତା, ପାହାଡ଼, ପବନ, ପୃଥିବୀ, ସୂର୍ଯ୍ୟ, ନୀହାରିକା.... ଏପରିକି ଅସୀମ ବିଶ୍ୱର ମୂଳ କଣିକା ହଉଛନ୍ତି ଏହି ପରମାଣୁ ଓ ପାରମାଣବିକ କଣିକା; ଯଥା-ଇଲେକ୍ଟ୍ରନ୍ ପ୍ରୋଟନ୍ ଓ ନ୍ୟୁଟ୍ରନ୍ ଆଦି । ବିଶାଳ ବିଶ୍ୱ ମଧ୍ୟରେ ଯିଏ ଯେତେ ବଡ଼ ହେଉ ବା ଛୋଟ ହେଉ, ତା'ର ଏକ ନିର୍ଦ୍ଦିଷ୍ଟ ଗଠନ, ସ୍ଥିତି ଓ ଦାୟିତ୍ୱ ମଧ୍ୟ ଅଛି । ଆମେ ସମସ୍ତେ ଏହି ବିରାଟ ବିଶ୍ୱ କୁଟୁମ୍ବର ସନ୍ତାନ - ସାଥି, ସାଙ୍ଗ । ଆଜି ଆମେ ମଣିଷ, ଗଛ, ପିମ୍ପୁଡ଼ି, ବାଳିଗରଡ଼ା ରୂପରେ ଅଛେ । କାଲିକି ଆମ ରୂପ ବଦଳିଯିବ । ଆମ ଦେହର ପାରମାଣବିକ କଣିକା ସବୁ କାହିଁ କୁଆଡ଼େ ମିଶି ନୂଆ ନୂଆ ବସ୍ତୁ ଗଢ଼ିବେ । ଆମେ ସମସ୍ତେ ଏମିତି ବଦଳି ଚାଲିଥିବା । କିନ୍ତୁ ସମସ୍ତେ ପରସ୍ପରକୁ ଭଲ ପାଇବା, ଆଦର କରିବା ଓ ଯତନ ନେବା । ତା ହେଲେ ଆମ ଜୀବନକାଳ ଅତି ଆନନ୍ଦମୟ ହୋଇପାରିବ । ଆଜି ସଭିଙ୍କ ଜୀବନରେ ସୁଖ, ଶାନ୍ତି ଓ ଆନନ୍ଦ ପାଇଁ ମଣିଷ ହାତରେ ଚାବି କାଠିଟି ରହିଛି ।''

''ବିଜ୍ଞାନ ହିଁ ତା'ର ଏହି ଚାବି କାଠି । ତୋ ପାଇଁ ଏହା ଏକ ଉଦ୍ଦୀପନା ଭରା ବାଟ । ଏହାକୁ ଆଧାର କରି ତୁ ଚାରିପାଖର ସମସ୍ତ ଗହନତାକୁ ବୁଝିପାରିବୁ । ତୁମମାନଙ୍କ ସ୍ନେହ ଓ ଚେଷ୍ଟା ବଳରେ ସାରା ଜଗତ ସ୍ୱର୍ଗ ବନି ଯାଇପାରିବ । କିନ୍ତୁ ମଣିଷ ଆଜି ବିଜ୍ଞାନକୁ ଯେଉଁ ପ୍ରକାରେ ବ୍ୟବହାର କରୁଛି, ତାହା ଆଶା ବଦଳରେ ମନରେ ଅନେକ ନିରାଶା ଭରି ଦେଉଛି । ମଣିଷ ଆଜି ମଣିଷ ସାଙ୍ଗରେ ଲଢ଼େଇ କରୁଛି ।



ବିଜ୍ଞାନର ଜୀବନ ଉପଯୋଗୀ ଅସ୍ତ୍ରଗୁଡ଼ିକୁ ଜୀବନ ବିନାଶ କରିବାରେ ଲଗାଉଛି । ହିରୋସୀମା, ନାଗାସାକିରେ ମଣିଷ ତା'ର ସାଥୀ ମଣିଷ ଉପରେ ବୋମା ଫିଙ୍ଗି ସେଠାକାର ସମାଜକୁ ଛାରଖାର କରି ପକାଇଛି । ସାଥୀ ମଣିଷ ସାଥିରେ ପଶୁ ପରି ଲଢ଼େଇ କରିବା ପାଇଁ କୋଟି କୋଟି ଟଙ୍କାର ମାରଣାସ୍ତ୍ର ବନାଉଛି । ଲୋଭରେ ମାତି ସେ ପୃଥିବୀକୁ ଟଳମଳ କରି ପକାଉଛି । ଆଉ ପଟେ ପୃଥିବୀର ଅଧାରୁ ବେଶୀ ଲୋକ ଖାଇବା, ରହିବା, ପିନ୍ଧିବା, ଜିଇଁବାକୁ ନ ପାଇ ହନ୍ତସନ୍ତ ହେଉଛନ୍ତି । ବିଜ୍ଞାନ ଆଜି ଲୋଭୀ ମଣିଷର ଆଚରଣରେ ଅପମାନିତ ହୋଇଛି । ନିଜେ ଘାରି ହେବା ସାଙ୍ଗକୁ ସାରା ଜଗତକୁ ବି ଦୁଃଖ, ଚିନ୍ତା ଓ ଯନ୍ତ୍ରଣାର ଜାଲରେ ଘାରୁଛି ।''

ମାମୀ ବ୍ୟସ୍ତ ହୋଇ ପଡ଼ିଲା । କହିଲା, ''ମୁଁ ତା ହେଲେ ବିଜ୍ଞାନୀ କାହିଁକି ହେବି ? ମୁଁ ଏଇଆ କରିବାକୁ ଚାହେଁ ନାହିଁ । ମୁଁ ଚାହେଁ ସମସ୍ତଙ୍କର

ସୁଖ, ଶାନ୍ତି ଓ ଆନନ୍ଦ ପାଇଁ ଏକ ବାଟ । ପ୍ରତ୍ୟେକ ଜୀବ ଖୁସିରେ ଜିଇଁବ । ସାରା ସମାଜ ପରସ୍ପରର ସ୍ନେହ, ଆଦରରେ ହସିବ । ସାଙ୍ଗ ମେଳରେ ସମସ୍ତେ ନିଜକୁ ଭୁଲିଯିବେ । ଏପରି ଚିନ୍ତା କରୁଥିବା ବିଜ୍ଞାନୀ କ'ଣ କେହି ବି ନାହାନ୍ତି ?''

ବାଲିଗରଡ଼ା ମାମୀର ମୁହଁକୁ ଏକ ଲୟରେ ଚାହିଁ ରହିଥିଲା । ସାଥି ଜୀବନ ଓ ଜଗତ ପ୍ରତି କୁନି ଝିଅଟିର ସ୍ନେହ ଓ ଦରଦ ତା'କୁ ମୋହି ଦେଇଥିଲା । ସେ ଚଟାପଟ୍ କହି ପକାଇଲା, ''ଅଛନ୍ତି, ଅଛନ୍ତି, ମାମିନୀ... ଅନେକ ସୃଷ୍ଟିପ୍ରେମୀ ବିଜ୍ଞାନୀ, ବିଜ୍ଞାନପ୍ରେମୀ ଅଛନ୍ତି, ଯେଉଁମାନେ ଏହି ସ୍ୱପ୍ନରେ ବିଶ୍ୱାସ କରନ୍ତି । ସେମାନେ ନ ଥିଲେ ଆମେ ଆଜି ପୃଥିବୀର ଗୋଟିଏ କୋଣରେ ଏପରି ବସି ଦୁଃଖ ସୁଖ ହୋଇ ପାରୁ ନଥାନ୍ତେ କି' ସପନ ଦେଖି ପାରୁ ନଥାନ୍ତେ । ପାଉଁଶଭରା ପୃଥିବୀ ଭିତରେ ଆମର ସତ୍ତା ନଥାନ୍ତା । ଆମର ଅନେକ ସାଥି-ବୈଜ୍ଞାନିକ ଅଛନ୍ତି ।''

''ଦେଖ୍ ଆମ ଚାରିପାଖରେ କେତେ ସମାଜପ୍ରେମୀ ଓ ସୃଜନଶୀଳ ବିଜ୍ଞାନୀ ଅଛନ୍ତି, ଯିଏ ନିଜର ମୁଣ୍ଡ, ମନ ଓ ପେଶୀକୁ ଲଗାଇ ପ୍ରକୃତି ଓ ଜୀବନ ସହ କେତେ ପରଖ ଚଳାଇଛନ୍ତି । ଚାଷୀ, ବଇଦ, ବଢ଼େଇ, କମାର, ତନ୍ତୀ, ଧୋବା, ଗୁଡ଼ିଆ, କୁମ୍ଭାର, ଶିଳ୍ପୀ, କାରିଗର, ଶିକ୍ଷକ, ଭାବୁକ, ଦାର୍ଶନିକ ଆଦି ସମସ୍ତେ । ସେମାନଙ୍କ ଯୋଗୁଁ ହିଁ ଏ ସମାଜ ଜିଇଁଛି । କିନ୍ତୁ ସେମାନଙ୍କୁ ଲୋଡ଼ା ଆମର ସହଯୋଗ, ଆଦର ଓ ସମର୍ଥନ । ସେମାନଙ୍କ ସଂଖ୍ୟା କମ୍ । ତୋ ପରି ବିଜ୍ଞାନୀଙ୍କର ଲୋଡ଼ା ଅଛି । ତୋ ପରି ଜଣ ଜଣ ହୋଇ ସମସ୍ତେ ଏହି ଧାରାରେ ମାତିବେ । ପୃଥିବୀ ଉପରେ ମାନବିକତାର ଧାରା ଆସିବ ହିଁ ଆସିବ । ମଣିଷ ତାର ପଶୁ ଗୁଣ ଠାରୁ ଅନେକ ଉପରକୁ ଉଠିବ ହିଁ ଉଠିବ । ପୃଥିବୀରେ ସ୍ୱର୍ଗ ଗଢ଼ା ହେବା ନିଶ୍ଚିତ । ଆମର ଆଜିର ଏହି ସ୍ୱପ୍ନ ଓ ଆହ୍ୱାନ ପୃଥିବୀରେ ନିଶ୍ଚୟ ଏକ ନୂଆ ତରଙ୍ଗ ତୋଳିବ ।''

ଏ ସବୁ କଥାରୁ ମାମୀ ଯଥେଷ୍ଟ ବିଶ୍ୱାସ ପାଇଥାଏ । କିନ୍ତୁ ଆଉ ଗୋଟିଏ ପ୍ରଶ୍ନର ଉତ୍ତର ତାକୁ ଲୋଡ଼ାଥାଏ । ସେ ଯେ ଜଣେ ମାନବିକ ବିଜ୍ଞାନୀ ହୋଇପାରିବ, ଏହା ନିଶ୍ଚିତ ମନେ ହେଉଥାଏ । କିନ୍ତୁ ତା'ର ସାଙ୍ଗ

ବାଲିଗରଡ଼ାଟି ଯେ, ତା' ସାଥିରେ ସବୁବେଳେ ଚାଲିବନି, ତାହା ତାକୁ ଦୁଃଖ ଲାଗୁଥାଏ । ତା ହେଲେ ସେ ଚାଲିବ କିପରି ?

ବାଲିଗରଡ଼ା ତା' ମନ କଥା ଠଉରାଇ ନେଲା । ସେ ମାମୀର ପାଖକୁ ଲାଗି ଆସି କହିଲା, ''ବିଜ୍ଞାନୀ ମାମିନୀ, ତୁ ଜାଣିଛୁ ଯେ ମୁଁ ଯଦି ତୋ'ର ହାତ ଧରି ବାଟ କଢ଼ାଏ, ତେବେ ତୁ ସବୁବେଳେ ମତେ ହିଁ ଚାହିଁବୁ । ମୁଁ ସବୁବେଳେ ତୋ ପାଖରେ କେମିତି ରହିବି କହିଲୁ ? ତତେ ମୁଁ ଚାଲିବାର କଉଶଳଟି ଶିଖାଇ ଦେଇଛି । ଏଥର ତୁ ଚାଲିପାରିବୁ ଓ ତୋ' ବାଟ ନିଜେ ବନାଇପାରିବୁ । ତୋ ପରି ଚାଲିବାକୁ ତୋର ଅତି ପ୍ରିୟ ଅନେକ ସାଥି ତୋତେ ଅନେଇ ବସିଛନ୍ତି । ତୁ ନିଜେ ନିଜେ ଚାଲିଲେ ସେ ସମସ୍ତେ ବଳ ପାଇବେ, ବିଶ୍ୱାସ ପାଇବେ । ତୁମେ ସମସ୍ତେ ତାଳ ମିଳାଇ ଚାଲିଲେ ପୂରାପୂରି ନୂଆ ବାଟଟିଏ ଗଢ଼ି ହୋଇଯିବ । ସମସ୍ତେ ତୋର ଏହି ପଦକ୍ଷେପଟିକୁ ଅପେକ୍ଷା କରିଛନ୍ତି । ତୁ ନ ଚାଲିଲେ, ଆମ ସ୍ୱପ୍ନଟି ଅଧୁରା ରହିଯିବ । ଆମେ ସ୍ୱର୍ଗ ଗଢ଼ିପାରିବାନି ।''

ବାଲିଗରଡ଼ା ଆଖିରୁ ଆବେଗରେ ଦୁଇ ଧାର ଲୁହ ବହିଗଲା । କିନ୍ତୁ ଏହି ଲୁହରେ ବନ୍ଧୁ ମାମିନୀ ପାଇଁ ଅମୃତର ଧାରାଟି ଜଳ ଜଳ ହୋଇ ଦିଶୁଥିଲା ।

ଏଇଟା ମାମିନୀ ପାଇଁ ଖାଲି ସପନ ନଥିଲା । ଏହା ଥିଲା ତା' ପାଇଁ ଏକ ମହତ ଶିକ୍ଷା ।

ବାଲିଗରଡ଼ା କହିଲା, ''ମାମିନୀ, ତୋ ସାଙ୍ଗରେ ଏପରି ଲମ୍ବା ଆଲୋଚନାଟିଏ କରି ମୁଁ ଆଜି ଯଥେଷ୍ଟ ଆନନ୍ଦ ପାଇଛି । ଆଜି ମଣିଷର ଅରାଜକତା ଯୋଗୁଁ ମୁଁ ମଧ୍ୟ ବିପନ୍ନ । ଆଶା କରୁଛି, ତୁ ମୋ କଥା କେବେ ବି ଭୁଲିବୁନି । ମୁଁ ଛୋଟିଆ ବାଲିଗରଡ଼ାଟିଏ । କିନ୍ତୁ ମତେ ଆଖି ଆଗରେ ରଖି ବିଜ୍ଞାନ ଚାଲିବା ନିହାତି ଜରୁରୀ । ତା'ହେଲେ ହିଁ ଏହି ଧରାରେ ସ୍ୱର୍ଗ ଆସିପାରିବ ।''

''ତୋ'ର ଅଭିଯୋଗ ଥିଲା ଯେ, କେହି ତୋ ପ୍ରଶ୍ନର ଉତ୍ତର ଦେଉ ନାହାନ୍ତି । କିନ୍ତୁ ଦେଖେ : ସମସ୍ତେ କିପରି ନିଜ ନିଜ କାମରେ ବ୍ୟସ୍ତ

ଅଛନ୍ତି । ଗଛଲତା, ପଶୁପକ୍ଷୀ, ପାହାଡ଼, ସାଗର, ନଈ, ମଣିଷ ସମସ୍ତେ । ତେଣୁ କାହାରି ଠାରୁ ଉତ୍ତରକୁ ଅପେକ୍ଷା କର ନାହିଁ; ତୁ ନିଜେ ଖୋଜି ଚାଲେ । ଏପରି କିଛି ନାହିଁ ଯାହା ତୁ ବୁଝିପାରିବୁ ନାହିଁ । ଦୁନିଆର ପ୍ରତି ଘଟଣା ପଛରେ କାରଣଟିଏ ଅଛି । ସବୁ ଜାଗାରେ ପ୍ରଶ୍ନ ପଚାରେ । କିନ୍ତୁ ନମ୍ରତା ଓ ସ୍ନେହର ସହିତ । ତୋର ବିଜ୍ଞାନ ହେଉ ମାନବିକ ବିଜ୍ଞାନ । ଉପକରଣ ହେଉ ପ୍ରକୃତିପ୍ରେମୀ ଚିନ୍ତାଧାରା । ଗବେଷଣାଗାର ହେଉ ଖୋଲା ଦୁନିଆଁ । ସାଥି ବିଜ୍ଞାନୀ ହୁଅନ୍ତୁ ତୋର ସାଥି, ଉତ୍ସାହୀ, ସୃଜନଶୀଳ ଓ ସକ୍ରିୟ ଯୁବ ସମାଜ । ତୋର ଭାଷା ହେଉ ସୃଷ୍ଟିର ଅନ୍ତର କଥା । ପୃଥିବୀ ତୋ ପାଇଁ ଏକ ଖୋଲା ବହି । ତୋର ମନ୍ତ୍ର ହେଉ : ଆଦର, ପ୍ରେମ ଓ ସୃଜନଶୀଳତା - ଏପରି ଏକ ସମାଜ ଯେଉଁଠି ପ୍ରତ୍ୟେକ ସାଥି ସର୍ବାଧିକ ସ୍ୱାଧୀନତା ପାଇ ପାରିବେ । ପ୍ରତ୍ୟେକ ସାଥିର ସାମାନ୍ୟତମ ପ୍ରତିଭା ବି ଫୁଟି ପାରିବାର ସୁଯୋଗ ପାଇ ପାରିବ । ପ୍ରେମର ଚିରନ୍ତନ ଧାରାରେ ସୃଷ୍ଟି ହସିବ ।...’’

ହଠାତ୍ ଦମ୍କାଏ ପବନ କାହିଁ କୁଆଡୁ ମାଡ଼ି ଆସିଲା । ବାଲିଗରଡ଼ାଟା ତା’ ସାଥିରେ କୁଆଡ଼େ ଉଡ଼ିଗଲା । ମାମୀର ନିଦଟା ଚାଉଁକିନା ଭାଙ୍ଗିଗଲା । ବାଲିଗରଡ଼ାକୁ ଖୋଜିବା ଆଶାରେ ମାମିନୀ ଚାରିଆଡ଼କୁ ଆଖି ପକାଇଲା । ବାଲିଗରଡ଼ାର କୌଣସି ପତ୍ତା ନଥିଲା । କିନ୍ତୁ ମାମୀର ମନରେ ସେଥିପାଇଁ ଟିକିଏ ବି ଦୁଃଖ ନଥିଲା । ସେ ପ୍ରସ୍ତୁତ ଥିଲା ଯେ, ଦିନେ ଏପରି ଘଟିବ ହିଁ ଘଟିବ ।

ତା’ ଚାରିପାଖରେ ଆଗର ନୀରବତା ଆଉ ନଥିଲା । ଗଛଲତା, ଫୁଲଫଳ, ଚଢ଼େଇ, ମାଟି, ପାଣି, ଆଦି ସମସ୍ତେ ଆଗ ଭଳି ନିଜ ନିଜ କାମରେ ବ୍ୟସ୍ତ ଥିଲେ । କିନ୍ତୁ ବ୍ୟସ୍ତତା ଭିତରେ ବି ସମସ୍ତେ ମାମୀର ବାଲିଗରଡ଼ା ପରି ହିଁ ହସୁଥିଲେ; ସାଙ୍ଗ ହେବା ପାଇଁ ମାମୀକୁ ହାତ ହଲାଇ ଡାକୁଥିଲେ । ସମସ୍ତେ ଚାହୁଁଥିଲେ- ମାମିନୀର ପରଶ, ଆଦର ଓ ଯତନ ।

ମାମୀ ତା’ କାମଟି ବୁଝି ସାରିଥିଲା । ବାଲିଗରଡ଼ା ସାଙ୍ଗରେ ସପନରେ ଉଡ଼ି ଉଡ଼ି ଖୋଜିବାର ଆବଶ୍ୟକତା ଆଉ ନଥିଲା । ଏବେ ସେ





ଏକା ଏକା ଉତ୍ତର ଖୋଜିବାର ବାଟ ଜାଣି ସାରିଥିଲା । କିନ୍ତୁ ଏକଲା କାହିଁକି ? ତା'ପରି ଅନେକ ମାମୀ ଏଇଆ ହିଁ ଚାହୁଁଥିଲେ ।

ସେ ଅନୁଭବ କଲା ଯେ, ସେ ସବୁ ପ୍ରଶ୍ନର ଉତ୍ତର ନିଜେ ଖୋଜି ପାରିବ । ବାଲିଗରଡ଼ା ତାକୁ ବାଟ ଦେଖାଇ ଦେଇ ଯାଇଛି । ସେ ଏବେ ଗଛ, ମାଛ, ଚଢ଼େଇ, ଆକାଶ ଆଦି ସମସ୍ତଙ୍କ ବିଷୟରେ ଜାଣିପାରିବ । ବାଲିଗରଡ଼ା ସାଙ୍ଗରେ ଉଡ଼ିଲା ପରି ସେ ନିଜେ ନିଜେ ଖୋଜିପାରିବ ତା'ର ପ୍ରତି ପ୍ରଶ୍ନର ଉତ୍ତର ।

ତା ପାଇଁ ସିଢ଼ି ଥିଲା : ଏହା କ'ଣ ? କେଉଁଠୁ ଆସିଲା ? କେମିତି ହେଲା ? କେବେ ହେଲା ? କାହିଁକି ହେଲା ? କାଲିକି କ'ଣ ହେବ ? ଏମିତି ଯେତେ ବେଶୀ ପ୍ରଶ୍ନ ଆଉ ପ୍ରଶ୍ନ । ପ୍ରଶ୍ନର ନ ଉତ୍ତ[illegible] ବସି ସେ ଦୁନିଆର ଜ୍ଞାନର ସାଗରରେ ବୁଲିପାରିବ ।

ବଗିଚାରେ ସେ ବେଶ୍ କିଛି ସମୟ ଧରି ବସିଥିଲା । ତାକୁ ଭାରି ଭୋକ ଲାଗୁଥାଏ । କିନ୍ତୁ ସେ ଭୋକ ଖାଲି ପେଟର ଭୋକ ନୁହେଁ । ତାହା ଥିଲା ତା'ର ଆଖି, କାନ, ନାକ, ଚମ, ମନ, ଅନୁଭବ, ସ୍ୱପ୍ନ, ଭାବ ଆଦିର ଏକ ଭୋକ - ଯାହାକି ଜଣେ ବିଜ୍ଞାନୀର ଭୋକ । ଘାରେ ଭାତ ଖାଇବାକୁ ବସିବା ଆଗରୁ ସେ ତା' ଡାଏରୀରେ ଲେଖି ରଖିଲା :-

**୧୭.୯.୮୦**

- *ମୁଁ ଜଣେ ବିଜ୍ଞାନୀ । ବିଜ୍ଞାନ ମୋର ସବୁ ପ୍ରଶ୍ନର ଉତ୍ତର ଦେଇ ପାରିବ । ପ୍ରକୃତିର ପ୍ରତ୍ୟେକ ସୃଷ୍ଟି ମୋର ପ୍ରିୟ ସାଥି ।*
- *ପ୍ରତି ଜିନିଷ ବା ଘଟଣାର କାରଣକୁ ମୁଁ ନିରପେକ୍ଷ ଭାବରେ ବିଚାର କରିବି ।*
- *ପୂର୍ବର ବିଜ୍ଞାନୀମାନଙ୍କ କାମକୁ ବୁଝିବା ପାଇଁ ମୁଁ ବହି ପଢ଼ିବି । ସେମାନଙ୍କର କାମକୁ ଉଚିତ୍ ସମ୍ମାନ ଦେବି ଓ ବାଗେଇବାକୁ ଚେଷ୍ଟା କରିବି ।*
- *ମୋର ବିଜ୍ଞାନ ପୂରାପୂରି ଜୀବନ, ସୃଷ୍ଟି ଓ ପ୍ରକୃତିପ୍ରେମୀ ବିଜ୍ଞାନ ହେବ । ଏହା ସୃଷ୍ଟିର ସମସ୍ତଙ୍କ ପାଇଁ ହସ, ଖୁସି ଆଣିଦେଇ ପାରିବ ।*
- *ମୁଁ କୌଣସି ବିଚାରକୁ ଅନ୍ଧ ପରି ମାନିବି ନାହିଁ ।*
- *ପ୍ରତ୍ୟେକ ବିଚାରକୁ ନିଜେ ପରଖି ଯାଞ୍ଚ କଲା ପରେ ହିଁ ମାନିବି ।*
- *କୌଣସି ବିଷୟରେ ଭଲ ଭାବେ ଜାଣିବା ପାଇଁ ମୁଁ ଲଗାତାର ପ୍ରଶ୍ନ ପଚାରି ଚାଲିବି । ଉତ୍ତରକୁ ଖୋଜିବି । ବାଲିଗରଡ଼ା ସାଙ୍ଗରେ ଗଲା ଭଳି ମୁଁ ନିଜ ଚେଷ୍ଟାରେ ପ୍ରତ୍ୟେକ ବିଷୟରେ ସତ୍ୟକୁ ବୁଝିବି ।*
- *ଦେଶର ମୂଳ, ଅସଲି ବିଜ୍ଞାନୀମାନଙ୍କର ଆଦର କରିବି । ତାଙ୍କ କାମକୁ ଆଗେଇବି ଓ ବାଗେଇବି ।*
- *ମୁଁ ଏପରି ଆଚରବି, ଯେପରି ତାହା ଅନ୍ୟମାନଙ୍କୁ ବିଶେଷ ଆଘାତ ହେବ ନାହିଁ ।*
- *[illegible]ର ମଙ୍ଗଳରେ ହିଁ ମୋ ମଙ୍ଗଳ ।*



ବାଲିଗରଡ଼ାର ଶୁଭେଚ୍ଛା ଓ ଆଶାକୁ ମାମୀ କେବେ ଭୁଲି ନାହିଁ । ଅସଲରେ 'ବିଜ୍ଞାନଟା କ'ଣ' ସେ ଠିକ୍ ବୁଝିପାରିଥିଲା । ମାମୀ ଆଜି ଆମ ସମସ୍ତଙ୍କ ଆଗରେ ଜଣେ ଆଦର୍ଶ ବିଜ୍ଞାନୀ ।

# ଅଭିଭାବକ ଓ ଶିକ୍ଷକଙ୍କୁ ଏକ ବିନମ୍ର ଅନୁରୋଧ

ମାମିନୀ - ଆମ ଦେଶର କୋଟି କୋଟି ପିଲାଙ୍କର ଏକ ପ୍ରତିଫଳନ । ପ୍ରତ୍ୟେକ ପିଲା, କ୍ଷମତା ଦିଗରୁ, ଜଣେ ଜଣେ ସକ୍ରିୟ, ଉତ୍ସାହୀ ଓ ଅତୀବ ସୃଜନଶୀଳ ବିଜ୍ଞାନୀ । ସେ କେବେ ଚୁପ୍ ହୋଇ ବସିପାରେ ନାହିଁ । ସୃଜନଶୀଳ ସ୍ୱପ୍ନରେ ତା'ର ପ୍ରତି କ୍ଷଣ ଓ ପ୍ରତି କଣିକା ଉଦ୍‌ବେଳିତ ହୁଏ । ସେ ଚାହେଁ ଆମ ଠାରୁ ଟିକେ ସମର୍ଥନ, ସୁଯୋଗ ଓ ସଦିଚ୍ଛା । କିନ୍ତୁ ଆମମାନଙ୍କର ନିଜର ହୀନମନ୍ୟତା, ରକ୍ଷଣଶୀଳତା ଓ ଅବିଜ୍ଞାନୀ ଦୃଷ୍ଟିକୋଣ ତା'ର ସବୁ ସ୍ୱପ୍ନକୁ ଚୁରମାର୍ କରି ପକାଏ । ଶିକ୍ଷା ଓ ଶୃଙ୍ଖଳା ନାଁରେ ଆମେ ତାକୁ ପୂରାପୂରି ପଙ୍ଗୁ କରିପକାନ୍ତି ।

ଏହି ଚିନ୍ତାଧାରା ଯୋଗୁଁ ଆମ ଦେଶରେ ବିଜ୍ଞାନର ଧାରାଟି ମୃତପ୍ରାୟ । ଏ ଦେଶରେ ଅଭିଭାବକ, ଶିକ୍ଷକ ଓ ସର୍ବୋପରି ବୈଜ୍ଞାନିକ ସମାଜର ମଧ୍ୟ ବିଜ୍ଞାନ ବୁଝାମଣାଟି ପାକଳ ନୁହେଁ । ଏହା ଯେତେ କଠୋର ଓ କଟୁ ମନେ ହେଲେ ବି ନିତାନ୍ତ ସତ । ତା' ନ ହୋଇଥିଲେ, ଗୋଟିଏ ସମ୍ବଳ ପ୍ରଚୁର ଦେଶରେ ଅଧାରୁ ଅଧିକ ଲୋକ ଭୋକିଲା, ରୋଗିଣା, ବାସହୀନ ଓ ଲଙ୍ଗଳା ହୋଇ ସଢୁ ନଥାନ୍ତେ କି ଦେଶରେ ବିଜ୍ଞାନ ନାଁରେ ଏତେ ମହୋତ୍ସବ, ଦିବସ, ଆଲୋଚନାଚକ୍ର ଓ ନାଟକ ଚାଲି ନଥାନ୍ତା । ଆମେ ଆମର ସ୍ୱଦେଶୀ ବିଜ୍ଞାନକୁ ନାକ ଟେକି, ବିଦେଶର ବିଜ୍ଞାନ ପସରା ଦେଖି, ଚାଖିବାକୁ ଲାଳ ନିଗାଡୁ ନଥାନ୍ତେ । ଆମ ବିଜ୍ଞାନ ମରି ମରି ଯାଉଛି । ବିଦେଶର ବେପାରୀ ବିଜ୍ଞାନ ଦାଉ ଦାଉ ହୋଇ ଆମ ଆଖି ଆଗରେ ଝଲସୁଛି । ଆମର ଆସନ୍ତା କାଲିଟି ଘୋର ଅନ୍ଧକାରମୟ । ବିଜ୍ଞାନ ଆମ ଦେଶରେ ଅପମାନିତ । ଆମ ଘର ଘରର ବିଜ୍ଞାନୀ ତାରା ରୂପକ ପିଲାଏ ଆଜି ବନ୍ଦୀ । ବିଜ୍ଞାନ ନାଁରେ ତାଙ୍କୁ ଆମେ ଯାହା ଶିଖାଉଛେ, ତାହା ଆମ ଦେଶର ଗୋଟିଏ ବି ବାଲିଗରଡ଼ାକୁ ଶାନ୍ତିରେ ରଖିପାରିବ ନାହିଁ ।



ଏ ଦେଶର ବିଜ୍ଞାନ ଓ ଭବିଷ୍ୟତ ମାମୀଙ୍କ ହାତରେ । ସେମାନେ ଚାହାନ୍ତି ଆମଠାରୁ କେବଳ ଟିକିଏ ସ୍ୱାଧୀନତା, ସଦିଚ୍ଛା ଓ ସୁଯୋଗ । ଚାଲିବାର କଳାଟି ତାଙ୍କୁ ଜଣା । ଆସନ୍ତୁ... ମାମୀ ରୂପକ ବିଜ୍ଞାନୀ ଚାରାଟିକୁ ଶାଖା ମେଲିବାକୁ ସୁଯୋଗଟିଏ ଦେବା ।

*ଉଡ଼ାଜାହାଜ, କମ୍ପ୍ୟୁଟର, ରକେଟ୍, ଯାନବାହନ ଆଦି ବିଜ୍ଞାନ ନୁହେଁ । ଏ ସବୁ ବିଜ୍ଞାନର ଅଶେଷ ଅବଦାନ । ଅସଲ ବିଜ୍ଞାନଟି ଆମ ମନ ଭିତରେ । ଏହା ଏକ ବିଚାରଧାରା... ଏକ ଦୃଷ୍ଟିକୋଣ । ଏହା ଆମ ଚାରିପାଖକୁ ଦେଖିବାର ଏକ କଳା ଆମ ଚାରିପାଖକୁ ଅଧିକ ସୁନ୍ଦର ଓ ଆନନ୍ଦମୟ କରିବାର ଏକ ଧାରା । ଜୀବନରୁ ଅନେକ ଯାନ୍ତ୍ରିକ ବୋଝକୁ ହାଲୁକା କରି ସତ୍ୟ, ଶାନ୍ତି ଓ ସୃଷ୍ଟି ରଚନା କରିବାର ଏକ ନିଶ୍ଚିତ ବାଟ ।*

# ମତେ ବିଜ୍ଞାନ ବଢ଼ିଆ ଲାଗେ......

ମନର ସପନ ମୋର ଡ଼ାକରା ଦିଏ
ଆକାର ପାଇବା ଲାଗି ଚଞ୍ଚଳ ହୁଏ

ନିକଟରୁ ଜଣେ ହିଁ ତା ଜବାବ ଦିଏ
ଆଉ ନୁହେଁ କେହି-ପ୍ରିୟ ବିଜ୍ଞାନ ସିଏ

ମତେ ବିଜ୍ଞାନ ବଢ଼ିଆ ଲାଗେ }
ତା'ର ପରଶେ ସପନ ଜାଗେ } ୨ଥର

ପକ୍ଷୀ ପରି ଡ଼େଣା ଝାଡ଼ି ଆକାଶେ ଉଡ଼ିବି
ମାଛ ପରି ଡ଼େଣା ମେଲି ଜଳରେ ବୁଡ଼ିବି
ଚିତା ପରି ଗୋଡ଼ ଠେଲି ପବନେ ଛୁଟିବି
ସିଂହ ପରି ତାକତରେ ପାହାଡ଼ ଟେକିବି

ମହାବଳୀ ହେବି ମୁହିଁ ବିଜ୍ଞାନୀ ଧାରାରେ,
ସରଜିବି ନୂଆ ଧାରା ଧରଣୀ ବୁକୁରେ ।

ମତେ ବିଜ୍ଞାନ ବଢ଼ିଆ ଲାଗେ }
ତା'ର ପରଶେ ସପନ ଜାଗେ } ୨ଥର

ଅଜଣା ଦୁନିଆଁ ସାରା ରକେଟେ ଘୂରିବି
ଅଦେଖା ଜଗତକୁ ମୁଁ ନିରେଖି ଚାହିଁବି
ପରବତ ଭେଦି ମୁହିଁ ସୁଡ଼ଙ୍ଗ ଖୋଳିବି
ଜଳଧାର ଅଟକାଇ ଜୀବନ ସଞ୍ଚିବି

ଗଢ଼ିଯିବି ନୂଆ ଯୁଗ ସବୁ ଜୀବ ଲାଗି
ବିଜ୍ଞାନର ଚାରାଟିକୁ ଯତନେ ରୋପିବି

ମତେ ବିଜ୍ଞାନ ବଢ଼ିଆ ଲାଗେ }
ତା'ର ପରଶେ ସପନ ଜାଗେ } ୨ଥର